


Digitized by srujan ka@gmail.com

# ଅଜବ ହାତୀ

ଆଲେକଜାଣ୍ଡାର ବେଲିୟାୟେଭ

ଅନୁବାଦ

ଲକ୍ଷ୍ମୀ ନାରାୟଣ ମହାନ୍ତି




ବହିଘର

ବାଲେଶ୍ୱର-୭୫୬୦୦୩

Digitized by srujan ka@gmail.com

କିଶୋର ଉପନ୍ୟାସ

# ଅଜବ ହାତୀ

: ମୂଳ ଲେଖକ :
ଆଲେକ୍ଜାଣ୍ଡାର ବେଲିୟାଯେଭ

: ଅନୁବାଦ
ଲକ୍ଷ୍ମୀ ନାରାୟଣ ମହାନ୍ତି
'ତପୋବନ', ଜଗନ୍ନାଥପୁର,
ଭଦ୍ରକ - ୭୫୬ ୧୦୦

ପ୍ରଥମ ପ୍ରକାଶ
୧୯୯୮

ପ୍ରକାଶକ
ବହିଘର
ସିନେମା ବଜାର,
ବାଲେଶ୍ୱର - ୭୫୬ ୦୦୩
ପକ୍ଷରୁ ଅଭୟ ଦାସ

: ପରିବେଷକ :
ବିଦ୍ୟାଭାରତୀ
ହୋଟେଲ ନିଶି କମ୍ପ୍ଲେକ୍ସ
ସିନେମା ବଜାର, ବାଲେଶ୍ୱର
ଗ୍ରନ୍ଥଭାରତୀ
ଫକୀରମୋହନ ସେନାପତି
ମାର୍ଗ, ବାଲେଶ୍ୱର
କଟକ ଟ୍ରେଡିଂ କଂପାନୀ
ବାଲୁବଜାର, କଟକ

: ମୁଦ୍ରାକର :
ପୃଥ୍ୱୀ ପ୍ରିଣ୍ଟର୍ସ
ସିନେମା ବଜାର, ବାଲେଶ୍ୱର

ଅକ୍ଷର ସଜ୍ଜା :
ତପସ୍ୱିନୀ
କଲ୍ୟାଣୀନଗର, କଟକ-୧୩

ପନ୍ଦର ଟଙ୍କା

ISBN-81-873A6-03-8

# AJAB HATI

by
ALEXANDAR BELIYAYEV

Translated by :
LAXMINARAYAN MOHANTY
'Tapoban' Jagannathpur,
Bhadrak-756 100

First Edition :
1998

: Published By :
Abhay Das
for BAHIGHARA,
Baleswar-756 003

: Distributors :
BIDYA BHARATI
Hotel Nishi Complex
Cinema Bazar, Baleswar
GRANTHA BHARATI
Fakir Mohan Senapati Marg,
Baleswar
CUTTACK TRADING CO.
Balubazar, Cuttack

: Printed by :
PRITHVI PRINTERS
Cinema Bazar, Baleswar

: Typesetting :
TAPASWINI
Kalyani Nagar, Cuttack-13

Rs. 15/-

Digitized by srujan ka@gmail.com



ଉତ୍କଳର ଗୌରବ
ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ
ଡକ୍ଟର ଗୋକୁଳାନନ୍ଦ ମହାପାତ୍ର
କରକମଳେଷୁ



Digitized by srujan ka@gmail.com

ରୁଷୀୟ ଭାଷାରେ ବିଜ୍ଞାନ ଆଧାରିତ ଉପନ୍ୟାସ ଲେଖି ଯେଉଁମାନେ ଯଶ ଅରଜି ଛନ୍ତି, ଆଲେକଜାଣ୍ଡାର ବେଲିୟାୟେଭ ହେଉଛନ୍ତି ସେମାନଙ୍କ ମଧ୍ୟରେ ପ୍ରମୁଖ କଥାକାର।

ଏକ ଅଜବ ହାତୀକୁ ନେଇ ରଚିତ ତାଙ୍କର ଏହି ଉପନ୍ୟାସଟି ଆନ୍ତର୍ଜାତିକ ସାରସ୍ୱତ କ୍ଷେତ୍ରରେ ଏକ ଉଚ୍ଚ ସ୍ଥାନ ଅଧିକାର କରିଛି।



କେତେକ ଅହେତୁକ କାରଣରୁ ଏପରି ମହତ କୃତିଟି ପଡ଼ି ରହିଥିଲା। ଏବେ ଅଭୟ ତାହାକୁ ଲୋକଲୋଚନକୁ ଆଣି ଅଶେଷ ଶ୍ରଦ୍ଧାଭାଜନ ହେଲେ।

Digitized by srujan ka@gmail.com

## ଏକ

ବର୍ଲିନ ମହାନଗରୀର ଶେଷ ସୀମାରେ ବୁଶ୍ ସର୍କସ ବିରାଟ ତମ୍ବୁ ଖଞ୍ଜିଥିଲା । ଦେଖଣାହାରୀଏ ଭରପୂର ହୋଇ ଯାଇଥିଲେ । ଗୋଟିଏ ହେଲେ ଆସନ ଖାଲି ପଡ଼ି ନ ଥିଲା । ଚଉଡ଼ା ବାରନ୍ଦାରେ ପରିବେଷକମାନେ ପାନପାତ୍ର ଧରି ଧାଉଁଥିଲେ । ଆଖି ଠାରି ଦେଲା କ୍ଷଣି ସେମାନେ ପୁରୁଷ ଦେଖଣାହାରୀଙ୍କ ହାତକୁ ପାନୀୟ ବୋତଲ ବଢ଼ାଇ ଦେଉଥିଲେ । ଅଥଚ ମହିଳା ଓ ଝିଅମାନେ ଖାଲି ବିସ୍କୁଟ୍ ଓ ଲଜେନ୍ସ ଚୋବାଉଥିଲେ । କିନ୍ତୁ ସଭିଙ୍କର ନଜର ରଙ୍ଗଭୂମି ଉପରେ ଲାଖି ରହିଥିଲା ।

ବିପୁଳ ସଂଖ୍ୟାରେ ଦେଖଣାହାରୀଏ ଏଠାରେ ଭିଡ଼ ଜମାଇଥିଲେ ଖାଲି ଫକୀରର ଖେଳ କି ବେଙ୍ଗ ଗିଳୁଥିବା ଲୋକଟି ସକାଶେ ନୁହେଁ । ସେମାନେ ଉଦ୍‌ଗ୍ରୀବ ହୋଇ ଅଜବ ହାତୀ ହୈଟୀ-ଟୈଟୀର ଖେଳକୁ ଅନାଇ ରହିଥିଲେ । ଆଗରୁ ସେହି ହାତୀଟିର ଅଲୌକିକ ଖେଳ ବିଷୟରେ ଖବରକାଗଜରେ ମନମତାଣିଆ କାହାଣୀସବୁ ବାହାରିଥିଲା । ଆଗମନର ପ୍ରଥମ ଦିନରେ ସର୍କସର ଟିକଟ ଘରେ 'ହାଉସ୍ ଫୁଲ' ନୋଟିସ୍ ଝୁଲିବାର ଦେଖାଗଲା । ଯେଉଁମାନେ କେବେ ସର୍କସର ଦୁଆର



Digitized by srujan ka@gmail.com

ମାଡ଼ି ନ ଥିଲେ, ସେମାନେ ଆସି ଏଠାରେ ଭିଡ଼ ଜମାଇଥିଲେ । ଏପରିକି ବକ୍ସ, ଚୌକି, ଗେଲେରୀ ଓ ତଳେ ସୋରିଷ ପକାଇବାକୁ ଜାଗାଟିଏ ସୁଦ୍ଧା ନ ଥିଲା । ବୁଢ଼ା-ବୁଢ଼ୀ, ଯୁବକ-ଯୁବତୀ, କିଶୋର-କିଶୋରୀ, ବାଳକ-ବାଳିକାମାନେ ଆଗରୁ ଆସନଗୁଡ଼ିକ ଅଧିକାର କରି ନେଇଥିଲେ ।

ପ୍ରଥମ ଭାଗର ଖେଳ ସରିଲା । ବିଶ୍ରାମ ବେଳେ ହାତୀର 'ଖେଳ ବିଷୟରେ ଦେଖଣାହାରୀଙ୍କ ଭିତରେ ଫୁସୁରୁଫାସର କଥା ଚାଲିଲା । ଅଚାନକ ତୂରୀ ବାଜିଲା । ସୁନେଲୀ ଓ ନାଲୀ ରଙ୍ଗର ପୋଷାକ ପିନ୍ଧି ସର୍କସର ଲୋକମାନେ ଧାଡ଼ି ବାନ୍ଧି ଛିଡ଼ା ହେଲେ । ହଠାତ୍ ପ୍ରବେଶ ପଥର ପରଦା ଖୋଲିଗଲା । ଦେଖଣାହାରୀଏ ହରଷ ଚିତ୍ତରେ ହାତତାଳି ମାରିଲେ । ଗୋଟିଏ ବିଶାଳ ହାତୀ ଆଗେଇ ଆସିଲା- ତା ମଥାରେ ସୁନେଲୀ ଫୁଲ ପକା ଝାଲର ଓ ଫୁଲ ତୋଡ଼ା ପରିହିତ ଟୋପି ଶୋଭା ପାଉଥିଲା । ତା ପଛେ ପଛେ ଜଣେ ଫ୍ରକ-କୋଟ-ପିନ୍ଧା ବାଙ୍ଗରା ଲୋକ ଲାଗି ରହିଥିଲା । ହାତୀଟି ଡାହାଣ ଓ ବାମକୁ ମଥା ନୁଆଁଇ ଦେଖଣାହାରୀଙ୍କୁ ଅଭିବାଦନ ଜଣାଇଲା । ତା ପରେ ସେ ରଙ୍ଗଭୂମିର ମଝିରେ ଯାଇ ଚୁପ୍‌ଚାପ ଛିଡ଼ା ହେଲା ।

ହାତୀର କଡିରେ ଠିଆ ହୋଇ ବାଙ୍ଗରା ଲୋକଟି ଗଳା ସଫା କରି କହିଲା- "ଭଦ୍ର ମହିଳା ଓ ମହୋଦୟଗଣ, ଆମ ବିଖ୍ୟାତ ହାତୀ ହୈଟୀ-ଟୈଟୀର ପରିଚୟ ପହିଲେ ଆପଣମାନଙ୍କୁ ଜଣାଉଛି । ତା ଦେହର ଲମ୍ବ ସାଢ଼େ ଚାରି ମିଟର, ଉଚ୍ଚତା ସାଢ଼େ ତିନି ମିଟର, ଆଉ ଶୁଣ୍ଢର ଅଗ ଠାରୁ ଦେହର ପଛ ଯାଏ ଲମ୍ବାରେ ନଅ ମିଟର ।"

ଏତିକି ବେଳେ ହାତୀ ହଠାତ୍ ଶୁଣ୍ଢଟା ସେହି ଲୋକଟିର ସାମନାକୁ ବଢ଼ାଇଦେଲା ।

ତହୁଁ ଲୋକଟି ସଙ୍ଗେ ସଙ୍ଗେ କହି ପକାଇଲା- "ମାଫ୍ କରିବେ, ମୋର ଟିକିଏ ଭୁଲ୍ ହୋଇଗଲା । ହାତୀର ଶୁଣ୍ଢ ଲମ୍ବାରେ ଦୁଇ ମିଟର, ଆଉ ତା ଲାଙ୍ଗୁଳଟା ପ୍ରାୟ ଦେଢ଼ ମିଟର । ତେଣୁ ଶୁଣ୍ଢର ଅଗ ଠାରୁ



Digitized by srujan ka@gmail.com



ଲାଙ୍ଗୁଳର ଶେଷ ଯାଏ ଲମ୍ବ ହେବ ସାତ ମିଟର ନବେ ସେଣ୍ଟିମିଟର । ନିତି ସେ ଖାଏ ୩୬୫ କିଲୋ ଗ୍ରାମ କଞ୍ଚା ପତର-ପରିବା ଓ ୧୬ ବାଲଟି ପାଣି ।''

ଜଣେ ଅଧ୍ୟାପକ ଏହି ସମୟରେ ପାଖ ଲୋକଙ୍କୁ କହିଲେ– ''ଦେଖିଲେ ତ, ହାତୀ ନିଜ ମାହୁନ୍ତର ଭୁଲଟା କିପରି ସୁଧାରି ଦେଲା !''

ମାହୁନ୍ତ ପୁଣି କହି ଚାଲିଲା- ''ଦୁନିଆରେ ସବୁ କାଳର ଅତି ଅଜବ ଏହି ହାତୀ ହୈଟୀ-ଟୈଟୀ । ହୁଏତ ଜୀବଜନ୍ତୁଙ୍କ ଜଗତରେ ଏ ହେଉଛି ସବୁ ଠାରୁ ଅଧିକ ପ୍ରତିଭାଶାଳୀ । ଜର୍ମାନ ଭାଷା ବୁଝେ, ନୁହେଁରେ ହୈଟୀ-ଟୈଟୀ ?''



Digitized by srujan ka@gmail.com

ହାତୀ ତୁରିତେ ଖୁବ୍ ଜୋରରେ ମଥା ହଲାଇଲା । ଦେଖଣାହାରୀଏ କରତାଳି ବାଡ଼େଇବାକୁ ଲାଗିଲେ ।

ବାଙ୍ଗରା ଲୋକଟି ଅବିଚଳ ଭାବରେ ପୁଣି କହିବାକୁ ଲାଗିଲା- "ହୈଟୀ-ଠୈଟୀ ହିସାବ କରିପାରେ, ସଂଖ୍ୟାସବୁ ଗଣି କହିଦେଇ ପାରେ ! ଆପଣମାନଙ୍କର ସନ୍ଦେହ ଦୂର କରିବା ସକାଶେ ମୁଁ ଆପଣମାନଙ୍କ ଭିତରୁ କେତେ ଜଣଙ୍କୁ ଏଠାକୁ ଆସିବାକୁ ଅନୁରୋଧ କରୁଛି । ସେମାନେ ନିଶ୍ଚୟ ପ୍ରମାଣ ଦେଇ ପାରିବେ, ଏଥିରେ କିଛି ଚାଲବାଜି ନାହିଁ ।"

ଅଧ୍ୟାପକ ଓ ତାହାଙ୍କ ସାଥୀ ଜଣକ ରଙ୍ଗଭୂମି ଆଡ଼କୁ ଆଗେଇଗଲେ ।

ଗୋଟିଏ ସଂଖ୍ୟା ଲେଖା ଚାରିକୋଣିଆ କାର୍ଡ଼ବୋର୍ଡ଼ର ସ୍ତୂପ ହାତୀ ସାମନାରେ ରହିଥିଲା । ମିଶାଣ, ଫେଡ଼ାଣ, ଗୁଣନ ଓ ହରଣ କରି ହାତୀ ସେଥିରୁ ବାଛି ସଠିକ୍ ଉତ୍ତରସବୁ ଉଠାଇ ଧରିବାକୁ ଲାଗିଲା । ପହିଲେ ଦିଆ ହେଲା ଏକକ ସଂଖ୍ୟା, ତା'ପରେ ଦୁଇ ସଂଖ୍ୟା । ହାତୀ ଥରେ ହେଲେ ଭୁଲ୍ ନ କରି ପ୍ରତ୍ୟେକ ଅଙ୍କ ଠିକ୍ ଭାବରେ କଷି ଦେଲା ।

ହାତୀକୁ ପରଖିବା ଲାଗି ଅଧ୍ୟାପକଙ୍କ ସାଥୀ ପକେଟରୁ ଘଡ଼ିଟା କାଢ଼ି ଆଣି ହାତୀର ସାମନାରେ ଦେଖାଇ ପଚାରିଲା- "କହ ତ ଦେଖି ହୈଟୀ-ଠୈଟୀ, ଏକ୍ଷଣି କେତେଟା ବାଜିଛି ?"

ହାତୀ ଲହମାକେ ଶୁଣ୍ଢରେ ଘଡ଼ିଟା ତା ହାତରୁ ଛଡ଼ାଇ ନେଇ କିଛି ସମୟ ତା ଉପରେ ଆଖି ବୁଲାଇଲା । ତା ପରେ ଘଡ଼ିଟି ମାଲିକକୁ ଫେରାଇ ଦେଇ କାର୍ଡ଼ବୋର୍ଡ଼ର ସଂଖ୍ୟାଗୁଡ଼ିକ ବାଛି ବାଛି ଉତ୍ତର ଠିଆ କରାଇଲା- ୧୦.୧୫ (ଦଶଟା ପନ୍ଦର ମିନିଟ) ।

ସାଥୀ ଘଡ଼ିକୁ ଅନାଇ ଆବାକାବା ହୋଇ ମୁଣ୍ଡ ହଲାଇଲା, ହାତୀଟି ଘଡ଼ିର କଣ୍ଟା ମୁତାବକ ଠିକ୍ ସମୟ ବତାଇଛି ।

ତା ପରେ ହାତୀର ପଢ଼ିବାର ପାଳି ପଡ଼ିଲା । ମାହୁନ୍ତ ହାତୀର



Digitized by srujan ka@gmail.com

ସାମନାରେ ଆଣି ଜୀବଜନ୍ତୁଙ୍କର ବଡ଼ ବଡ଼ ଛବିସବୁ ରଖିଲା । ଅନ୍ୟ କାର୍ଡ଼ବୋର୍ଡ଼ଗୁଡ଼ିକରେ ସିଂହ, ବାଘ, ହାତୀ, ବାନର, ଇତ୍ୟାଦି ଲେଖା ହୋଇଥିଲା । ହାତୀକୁ ଗୋଟାକ ପରେ ଗୋଟିଏ ଛବି ଦେଖା ହେଉଥିଲା । ହାତୀଟି ତା ଶୁଣ୍ଢରେ ସେହି ଜନ୍ତୁର ନାମ ଲେଖା କାର୍ଡ଼ବୋର୍ଡ଼ଟା ଆଣି ଦେଖାଉଥିଲା । ସେଥିରେ ଆଦୌ ଭୁଲ ହେଉ ନ ଥିଲା । ତା ପରେ ଓଲଟା ପରୀକ୍ଷା ଚାଲିଲା । ପ୍ରଥମେ ଲେଖାଟି ଦେଖାଇଲାରୁ ହାତୀ ଛବିଟା ବାହାର କରିବାକୁ ଲାଗିଲା । ଏଥିରେ ବି କିଛି ଭୁଲ୍ ଧରା ପଡ଼ିଲା ନାହିଁ ।

ଶେଷରେ ହାତୀର ସାମନାରେ ସବୁ ଅକ୍ଷର ସଜାଇ ରଖାଗଲା । ସେ ଗୋଟିଏ ଲେଖାଏଁ ଅକ୍ଷର ସେଥିରୁ ବାଛି ନେଇ ଶବ୍ଦ ତିଆରି କରି ପ୍ରଶ୍ନର ଉତ୍ତର ଦେଲା ।

"ତୁମ ନାମ କଅଣ ?"- ପଚରାଗଲା ।

ଉତ୍ତର ମିଳିଲା- "ଏବେ ହୈଟୀ-ଟୈଟୀ ।"

ପୁଣି ପ୍ରଶ୍ନ- "ଏବେ ମାନେ ? ଆଗରୁ କଅଣ ତୁମର ଅନ୍ୟ ନାମ ଥିଲା ? କଅଣ ସେଟା ?"

"ସାପୀୟେନ୍ସ (ବୁଦ୍ଧିମାନ)"-ହାତୀ ଜବାବ ଦେଲା ।

ତା ପରେ ହାତୀ ଅକ୍ଷରସବୁ ସଜାଇ ଗୋଟିଏ ବାକ୍ୟ ଗଢ଼ିଲା- "ଆଜି ଏତିକି ଯଥେଷ୍ଟ !"

ମାହୁନ୍ତର ପ୍ରତିବାଦକୁ ମୋଟେ ଖାତିର୍ ନ କରି ହାତୀ ଚଉଦିଗରେ ମଥା ନୁଆଁଇ ଦେଖଣାହାରୀଙ୍କୁ ଅଭିବାଦନ ଜଣାଇ ରଙ୍ଗଭୂମି ଛାଡ଼ି ଭିତରକୁ ଚାଲିଗଲା ।





Digitized by srujan ka@gmail.com

## ଦୁଇ

ଦେଖଣାହାରୀ ସଭିଏଁ ପଳାଇଲେ । ରଙ୍ଗଭୂମି ଉପରେ କେବଳ ଗୋଟିଏ ଆଲୁଅ ଛଡ଼ା ବଡ଼ ବଡ଼ ବତୀସବୁ ଲିଭିଗଲା । ହାତୀକୁ ପୁଣି ସେଠାକୁ ଅଣାଗଲା । ବାଙ୍ଗରା ମାହୁନ୍ତ ଦେହରେ ଖାଲି ସୋୟେଟାରଟିଏ ଗଳାଇଥିଲା । ସେ ଫାଟକ ପାଖକୁ ଘୁଞ୍ଚିଗଲା ।

ବୈଜ୍ଞାନିକମାନେ ପରୀକ୍ଷା ଆରମ୍ଭ କଲେ । ହାତୀ ମନ ଦେଇ ସେମାନଙ୍କ କଥା ଶୁଣିଲା, ସବୁ ପ୍ରଶ୍ନର ଜବାବ ବି ଦେଲା, ମୋଟେ ଭୁଲ୍ ନ କରି ନାନା ରକମ ଅଙ୍କ କଷିଲା । ସେଥିରୁ ଦେଖାଗଲା, ଚଟାପଟ ଜବାବ ଦେବାରେ ହାତୀର ଅଲୌକିକ କ୍ଷମତା ଅଛି । ପ୍ରାୟ ମଣିଷ ପରି ତାହାର ଅସାଧାରଣ ବୁଦ୍ଧି ଅଛି ବୋଲି ମାନିବାକୁ ହେବ ।

ପରୀକ୍ଷକଙ୍କର ନାନା ରକମ ଯୁକ୍ତି ତର୍କ ଶୁଣି ଶୁଣି ଶେଷକୁ ହାତୀ କ୍ଳାନ୍ତ ହୋଇଗଲା । ସହସା ଶୁଣ୍ଢ ବଢ଼ାଇ ସେ ଅଧାପକଙ୍କ କୋଟ ପକେଟରୁ ଘଡ଼ିଟା ଟାଣି ନେଇ ଦେଖାଇ ଦେଲା । ଘଡ଼ିର ଛୋଟ କଣ୍ଟାଟି ବାରଟା ଉପରେ ଥିଲା । ତା ପରେ ସେ ଘଡ଼ିଟା ଅଧାପକଙ୍କ ପକେଟରେ ରଖି ଦେଲା, ତାହାଙ୍କୁ କାନ୍ଧ ଧରି ଶୁଣ୍ଢରେ ଉଠାଇନେଲା, ଆଉ ରଙ୍ଗଭୂମିର ଫାଟକ କଡ଼ିରେ ତଳେ ଥୋଇଦେଲା ।



Digitized by srujan ka@gmail.com



ଏହା ଦେଖି ଅନ୍ୟ ବୈଜ୍ଞାନିକମାନେ ହାତୀକୁ କହି ପକାଇଲେ–
''ଆମେ ଏକ୍ଷଣି ଚାଲି ଯାଉଛୁ, କିଛି ମନେ କରିବ ନାହିଁ।''

ତା ପରେ ସେମାନେ ବିଚଳିତ ହୋଇ ରଙ୍ଗଭୂମିରୁ ପଳାଇଲେ।

ମାହୁନ୍ତ କହିଲା– ''ହେିଟୀ-ଟେିଟୀ ଠିକ୍ କରିଛି। ସେମାନଙ୍କୁ ଅର୍ଦ୍ଧ ଚନ୍ଦ୍ର ଦେଇ ବିଦାୟ କରିଛି। ଏବେ ଆମର ଆହୁରି ଢେ଼ର୍ କାମ ବାକି ଅଛି।'' ସେ ଡାକ ଛାଡ଼ିଲା।

କେତେ ଜଣ ଲୋକ ଧାଇଁ ଆସି ରଙ୍ଗଭୂମି ସଫା କରିବାରେ ଲାଗି ପଡ଼ିଲେ। ବାଲି ବିଛା ହୋଇଥିବା ଜାଗାଟା ସମାନ କରିଦେଲେ, ବାଟଟା ସଫା କରି ଖୁଣ୍ଟ, ସିଡ଼ି, ଟୁଲ୍, ଇତ୍ୟାଦି ନେଇଗଲେ। ସାଜସଜାଗୁଡ଼ିକ ନେଇଯିବାରେ ହାତୀ ମଧ୍ୟ ସେହି ଲୋକଙ୍କୁ ସାହାଯ୍ୟ



Digitized by srujan ka@gmail.com

କଲା । କିନ୍ତୁ ମାଲୁମ ହେଲା, ସତେକି ସେ ଖୁବ୍ ବିରକ୍ତ ହୋଇଛି । ଏତିକି ବେଳେ ଜୋରରେ ଗଁ ଗଁ କରି ସେ ମଥା ହଲାଇ ଗୋଟାଏ ସାଜସଜାକୁ ଏପରି ଭାବରେ ଗୋଇଠାଏ ମାରିଲା ଯେ ସେଟା ସଙ୍ଗେ ସଙ୍ଗେ ଭୁଷୁଡ଼ି ପଡ଼ିଲା ।

ମାହୁନ୍ତ ହାତୀକୁ ଧମକାଇଲା– ''ଏସବୁ କଅଣ ହେଉଛି, ବଦମାସ ! ଦେଖୁଛି, ତୋର କାମରେ ଆଉ ମନ ନାହିଁ । ଲେଖି ପଢ଼ି ପାରିଲୁଣି ବୋଲି ତୋର ତ ଭାରି ଦିମାକ ହେଲାଣି ! ଏଠି ଏସବୁ ଆଉ ଚଳିବ ନାହିଁ, କହି ଦେଉଛି ।''

କିନ୍ତୁ ହାତୀ ଏସବୁ କଥାକୁ ମୋଟେ ଖାତିର୍ କଲା ନାହିଁ । ଫେର୍ ଗଁ ଗଁ କରି ସେ ରଙ୍ଗଭୂମିର ଫାଟକ ଆଡ଼େ ଯିବାକୁ ଗୋଡ଼ ଉଠାଇଲା ।

''ଏଁ, ଏ କଅଣ କରୁଛୁ ? ପଳାଉଛୁ ? ରହ, ଏଇନେ ତୋ ମଜା ବାହାର କରି ଦେଉଛି ।'' ଏହା କହି ମାହୁନ୍ତ ଧାଇଁ ଯାଇ ଗୋଟାଏ ଝାଡୁ ନେଇ ଆସି ହାତୀର ମୋଟା ପିଠାରେ ଖେଞ୍ଚି ଦେଲା । ହାତୀଟି ଅଚାନକ ବୁଲିପଡ଼ି ମାହୁନ୍ତକୁ ଜାବୁଡ଼ି ଧରି ତାହାକୁ କୁକୁର ଛୁଆ ପରି କିଛି ସମୟ ଶୂନ୍ୟରେ ବୁଲାଇଲା । ଶେଷରେ ହାତୀ ତାହାକୁ ତଳେ ପକାଇ ଦେଇ ଝାଡୁର ବେଣ୍ଟରେ ବାଲି ଉପରେ ଲେଖିଦେଲା- ''ମୋତେ ମାରଧର କରିବାକୁ କଦାପି ସାହସ କର ନାହିଁ । ମୁଁ ଜାନୁଆର ନୁହେଁ, ଜଣେ ସଚ୍ଚା ମଣିଷ !''

ତା ପରେ ହାତୀଟି ଝାଡୁଟା ଫୋପାଡ଼ି ଦେଇ ସର୍କସର ପ୍ରବେଶ ପଥ ଆଡ଼େ ମୁହାଁଇଲା, ମୁଖ୍ୟ ଫାଟକରେ ଯାଇ ହାଜର ହେଲା, ବିଶାଳ ଦେହରେ ଭରା ଦେଇ କାନ୍ଧରେ ଏତେ ଜୋରରେ ଠେଲିଦେଲା ଯେ ଫାଟକଟା ଚିକି ଚିକି ହେଇ ତଳେ ଖସି ପଡ଼ିଲା । ତହୁଁ ହାତୀ ଆଗେଇଗଲା ।

ସର୍କସର ମେନେଜରକୁ ଛାଇ ନିଦ ମାଡ଼ି ଯାଇଥିଲା । ଏତିକି ବେଳେ ତା ଦରଜାରେ କରାଘାତ ହେବାରୁ ସେ ଧଡ଼ପଡ଼ ଉଠି ପଡ଼ିଲା ।

ମାହୁନ୍ତ ଭୟରେ ଥରି ଥରି ଡ଼ିମା ଡ଼ିମା ଆଖିରେ କାତର ଗଳାରେ ଜଣାଇଲା- ''ଭୀଷଣ ବିପଦ । ହାତୀ ହୈଚୀ-ଚୈଚୀ ପାଗଳା ହୋଇ ଯାଇଛି !''

ମେନେଜର ପଚାରିଲା- ''ଆଉ ତୁମେ ନିଜେ ? ଠିକ୍ ଅଛ ତ ?''



Digitized by srujan ka@gmail.com

ମାହୁନ୍ତ ଟିକିଏ ମନ ଉଣା କରି ଜବାବ ଦେଲା- "ବିଶ୍ୱାସ କରନ୍ତୁ, ମୁଁ ଆଜି ଟୋପେ ହେଲେ ମଦ ଛୁଇଁ ନାହିଁ । ହାତୀ ମୋ ହାତରୁ ଝାଡୁଟା ଟାଣି ନେଇ ଲେଖିଲା, ମୋତେ ଶୂନ୍ୟରେ ଘୂରାଇ ଘୂରାଇ ଫିଙ୍ଗିଦେଲା, ଆଉ ଶେଷରେ ଫାଟକ ଭାଙ୍ଗି ପଳାଇଲା ।"

"ଏଁ, ଏଟା ଫେର୍ କି କଥା ! ହାତୀ ପଳାଇଛି ! ତୁରନ୍ତ ସେଟାକୁ ଧରି ଆଣିବାର ବ୍ୟବସ୍ଥା କରିବାକୁ ହେବ, ନୋହିଲେ ଆମର ଯେ ସର୍ବନାଶ ହେବ । ଆଜି ସର୍କସରେ କାହାର ପାଳି ଅଛି ? ପୋଲିସ୍‌କୁ ଖବର ଦିଆଯାଇଛି ? ହାତୀଟାକୁ ଧରିବା ଲାଗି କିଛି ବ୍ୟବସ୍ଥା ହୋଇଛି ?"

ମାହୁନ୍ତ ଜବାବ ଦେଲା- "ମୋର ପାଳି ଅଛି । ଯଥା ସମ୍ଭବ ସବୁ କାମ କରିଛି, ମାତ୍ର ପୋଲିସ୍‌କୁ ଜଣାଇ ନାହିଁ । ସେମାନେ ବଳେ ଖବର ପାଇଯିବେ ଯେ । ହାତୀ ପଛେ ପଛେ ଧାଇଁ ଧାଇଁ ମୁଁ ତାହାକୁ କେତେ କାକୁତି ମିନତି କରିଛି, ଢେର୍ ଖୋସାମତ ବି କରିଛି । କିନ୍ତୁ ହାତୀଟା ମୋ କଥାକୁ କାନ ଦେଲା ନାହିଁ, ଓଲଟି ଶୁଣ୍ଢରେ ମୋ ଆଡ଼କୁ ଜୋରରେ ହାଉଆ ଛାଡ଼ିଲା । ଆମେ ସମସ୍ତେ ତାହାକୁ ବହୁତ ବୁଝାଇଲୁ । କିଛି ଫଳ ହେଲା ନାହିଁ । ସେ କାହାକୁ ନ ଅନାଇ ଗ୍ରୀନଭାଲ୍‌ଦ ବଣ ଆଡ଼େ ଚାଲି ଯାଇ ଏକ୍ଷଣି ହାପେଲ୍‌ରେ ଗାଧୋଉଛି ।"

ଏତିକି ବେଳେ ଟେଲିଫୋନର ଘଣ୍ଟି ବାଜିଲା । ମେନେଜର ରିସିଭର ଉଠାଇ ପୋଲିସ ସହ କଥା ହେଲା- "ହଁ, ମୁଁ ଜାଣିଛି । ଧନ୍ୟବାଦ । ଯାହା କରିବାର କଥା ଆମେ କରୁଛୁ । ଫାୟାର ବ୍ରିଗେଡ଼ ଲୋଡ଼ା ନାହିଁ । ବରଂ ହାତୀକୁ ନ ରଗାଇଲେ ଭଲ ହେବ ।"

ରିସିଭରଟା ଥୋଇ ଦେଇ ମେନେଜର କହିଲା- "ପୋଲିସ ଫାୟାର ବ୍ରିଗେଡ଼ ପଠାଇବାକୁ କହୁଥିଲା, ମୁଁ ମନା କଲି । ଆମକୁ ଖୁବ୍ ସାବଧାନରେ ଏ କାମରେ ଆଗେଇବାକୁ ହେବ । ହାତୀଟା ତ ତୁମକୁ ଭଲ ଭାବରେ ଜାଣେ । ତୁମେ ବରଂ ତା ପାଖକୁ ଯାଇ ତାହାକୁ ଆଦର କରି ଫେରାଇ ଆଣିବାକୁ ଚେଷ୍ଟା କର ।"

"ନିଶ୍ଚୟ ଚେଷ୍ଟା କରିବି, ଏପରିକି ତାହାକୁ ରାଷ୍ଟ୍ରପତି ବୋଲି ସମ୍ବୋଧନ କରିବି"- ମାହୁନ୍ତ କହି ଦେଇ ଚାଲିଗଲା ।

ମେନେଜରକୁ ରାତି ସାରା ଆଉ ନିଦ ହେଲା ନାହିଁ । ଟେଲିଫୋନ ଶୁଣି ଶୁଣି ଏବଂ ଟେଲିଫୋନରେ ନିର୍ଦ୍ଦେଶ ଦେଇ ତାହାର ସମୟ



Digitized by srujan ka@gmail.com

ବିତିଲା । ସେ ଶୁଣିବାକୁ ପାଇଲା- ହାତୀଟି ଶିଖା ଦ୍ୱୀପ କତିରେ ଗାଧୋଇ କିଛି ସମୟ କଟାଇଲା, ତା ପରେ ଗୋଟାଏ ପରିବା ଖେତରେ ପଶି ସବୁତକ ବନ୍ଧାକୋବି ଓ ଗାଜର ଖତମ କରିଦେଇ, ଶୁଣ୍ଢ ବଢ଼ାଇ ଗୋଟିଏ ଫଳ ବଗିଚାରୁ ପେଟେ ସେଓ ଖାଇ ସାରି ପ୍ରିଦେନସଦର୍ପ ବଣ ଆଡ଼କୁ ଆଗେଇଗଲା । ସେ ପରିବା ଖେତକୁ ଗୋଡ଼ରେ ଦଳି ଚକଟି ନଷ୍ଟ କରି ନ ଥିଲା, କି ଫଳ ଗଛର କିଛି ଡାଳପତର ଭାଙ୍ଗି ପକାଇ ନ ଥିଲା । ଏ ଦିଗରେ ସେ ଖୁବ୍ ବିବେଚନାରେ ପେଟଭୋକର ଦାଉ ଦୂର କରିଥିଲା ।

ସକାଳ ଛଅଟାରେ ମାହୁନ୍ତ ପୁଣି ଆସି ମେନେଜରକୁ ଭେଟିଲା । କ୍ଳାନ୍ତ ଚେହେରା, ଧୂଳି ଧୂସରିତ, ମୁଖରୁ ଝାଳ ବୋହୁଥିଲା, ପୋଷାକ ଓଦା ସଡ଼ସଡ଼ ।

ମେନେଜର ପଚାରିଲା- "ଖବର କଅଣ ?"

ମାହୁନ୍ତ ଭୟରେ ଥରି ଥରି ଜଣାଇଲା- "ସେହି ଏକା ରକମ ଅବସ୍ଥା । ହାତୀଟି ମୋର ସକଳ ଅନୁନୟ ବିନୟ ଆଦୌ କାନକୁ ନେଲା ନାହିଁ । ଏପରିକି ମହାମାନ୍ୟ ରାଷ୍ଟ୍ରପତି ବୋଲି ଡାକିବାରୁ ସେ ରାଗି ଯାଇ ମୋତେ ପାଣି ଭିତରକୁ ପେଲି ଦେଲା । ଜଣା ଯାଉଛି, ତାହାକୁ ଗୋଟିଏ ହାମବଡ଼ା ରୋଗ ଘାରିଛି । ଯେତେ ରକମ ବୁଝାଇଲି, ସେ ମୋ କଥା ମୋଟେ କାନକୁ ନେଲା ନାହିଁ । ସର୍କସକୁ ଫେରି ଆସିଲେ ଆରାମରେ ରହିବାକୁ ତାହାକୁ ଘର ମିଳିବ, ଗରମରେ ରହିବ, ଲୁଗାପଟା ବି ପିନ୍ଧିବ । ସେ କିଛି ସମୟ ମନ ଦେଇ ମୋ କଥା ଶୁଣିଲା, କଅଣ ଭାବିଲା । ଆଉ ଶେଷରେ ଶୁଣ୍ଢରେ ପାଣି ଆଣି ମୋ ଉପରକୁ ଘନଘନ ଛାଟିଲା ।"

ସବୁ ମାନସିକ ଚେଷ୍ଟା ବିଫଳ ହେବାରୁ, ଅବଶେଷରେ ମେନେଜର କୌଣସି କଠୋର ପଦକ୍ଷେପ ନେବାକୁ ଠିକ୍ କଲା ।





Digitized by srujan ka@gmail.com

## ତିନି

ପୋଲିସର ସହାୟତାରେ ଗୋଟିଏ ଦମକଳ ବାହିନୀକୁ ବଣକୁ ପଠାଗଲା । ସେମାନେ ହାତୀ ଥିବା ଜାଗାର ଦଶ ମିଟର ଦୂରରେ ଗୋଟିଏ ଅଧା ଗୋଲ ବ୍ୟୂହ ରଚନା କଲେ । ତା ପରେ ସେମାନେ ହାତୀ ଉପରକୁ ହୋସ୍ ପାଇପ୍‌ରେ ଜୋରରେ ପାଣି ଛାଟିଲେ । ହାତୀ ଅତି ହରଷରେ ସେହି ପାଣି ଆଡ଼େ ଏପଟ ସେପଟ ଦେହ ଦେଖାଇ ଗାଧୋଇବାକୁ ଲାଗିଲା । ତା ପରେ ସେମାନେ ଦଶଟା ହୋସ୍ ପାଇପକୁ ଏକାଠି କରି ହାତୀର ଆଖି ଆଡ଼େ ଗୋଟିଏ ଏକମୁଖୀ ଧାରା ଛାଡ଼ିଲେ ।





Digitized by srujan ka@gmail.com

ହାତୀକୁ ଏଟା ମୋଟେ ପସନ୍ଦ ହେଲା ନାହିଁ । ସେ ଭାରି କୋପିତ ହୋଇ ରଡ଼ି ଛାଡ଼ି ଏପରି ଭାବରେ ଦମକଳର ଲୋକଙ୍କୁ ଖେଦିନେଲା ଯେ ସେମାନେ ଭୀଷଣ ଡରରେ ଧାଇଁ ପଳାଇଲେ । ହାତୀ ଦମକଳର ଇଞ୍ଜିନଟା ଓଲଟାଇ ଦେଲା, କେତୁଟା ଗାଡ଼ିକୁ ପାଣି ଭିତରକୁ ଠେଲି ଦେଲା, ବନ ବିଭାଗର ଗୁମୁଟିଟା ଭାଙ୍ଗିଦେଲା, ଆଉ ଜଣେ ପୋଲିସ ଲୋକକୁ ଶୁଣ୍ଢରେ ଉଠାଇ ଗଛ ଉପରକୁ ଫିଙ୍ଗିଦେଲା ।

ଏହି ଘଟଣାର ବିବରଣୀ ପାଇ ପୋଲିସ ଅଧିକାରୀ ଦଳେ ବନ୍ଧୁକଧାରୀ ପୋଲିସଙ୍କୁ ସେହି ବଣକୁ ପଠାଇଁ ହାତୀଟାକୁ ମାରିଦେବା ଲାଗି ହୁକୁମ ଦେଲେ । କିନ୍ତୁ ମେନେଜର ଏଥିରେ ଏକାବେଳେ ହତାଶ ହେଲା, ହାତୀ ଯାହା ନଷ୍ଟ କରିଛି ତହିଁର କ୍ଷତିପୂରଣ ବାବଦ ମୋଟା ଟଙ୍କା ଦେବାକୁ ମନେ ମନେ ଭାବିଲା, ଆଉ ପୋଲିସ ଅଧିକାରୀଙ୍କୁ ନିଜ ଆଦେଶ ମୁଲତବି ରଖିବା ଲାଗି ଅନୁରୋଧ ଜଣାଇଲା ।

ପୋଲିସ ଅଧିକାରୀ ଜବାବ ଦେଲେ- ''ହେଉ, ମୁଁ ଆପଣଙ୍କୁ ଠିକ୍ ଦଶ ଘଣ୍ଟା ସମୟ ଦେଇପାରେଁ । ତା ପରେ ସମୁଦାୟ ବଣଟା ଘେରାଉ କରାଯିବ । ଦରକାର ପଡ଼ିଲେ, ସୈନ୍ୟ ବାହିନୀକୁ ବି ତଲବ କରିବି ।''

ମେନେଜର ସର୍କସର ଓ ସ୍ଥାନୀୟ ଚିଡ଼ିଆଖାନାର କର୍ମଚାରୀଙ୍କର ଗୋଟିଏ ଜରୁରୀ ବୈଠକ ଡକାଇଲା । ବୈଠକର ସିଦ୍ଧାନ୍ତ ଅନୁସାରେ ସମୁଦାୟ ବଣଟା ଘେରାଓ କରି ଗୋପନ ଖାତସବୁ ଖୋଳା ଯାଇ ଫାନ୍ଦଗୁଡ଼ିକ ଏପରି ଭାବରେ ବସାଗଲା ଯେ କୌଣସି ସାଧାରଣ ହାତୀ ସେଥିରେ ଅଲବତ୍ ଧରା ପଡ଼ିଯିବ । କିନ୍ତୁ ହାତୀଟି ବାଡ଼ଗୁଡ଼ାକ ଥରେ ଘୁରି ଆସିଲା, ଗୋପନ ଖାତ ଉପରୁ ଡାଳପତ୍ରସବୁ ଆଡ଼େଇ ଦେଲା, ଗଛ ସହିତ ବନ୍ଧା ହୋଇଥିବା ମୋଟା କାଠ ଗଡ଼ଗୁଡ଼ିକ ଉପରେ ଆଦୌ ପାଦ ଦେଲା ନାହିଁ ।

ଏଣେ ସମୟର ମିଆଦଟା ସରି ଯାଉଥିଲା । ଜୋରଦାର ପୋଲିସ ବାହିନୀ ଦ୍ୱାରା ଘେରାଓ ବ୍ୟବସ୍ଥା ଜୋର କରାଗଲା । ଏତିକି



Digitized by srujan ka@gmail.com

ବେଳେ ଗଛର ଫାଙ୍କରେ ଦିଶିଲା, ହ୍ରଦ ଜଳରେ ଛିଡ଼ା ହୋଇ ହାତୀଟି ଶୁଣ୍ଢରେ ପାଣି ନେଇ ତା ପ୍ରକାଣ୍ଡ ପିଠି ଉପରକୁ ଛାଟୁଛି। ପୋଲିସ ଅଧିକାରୀ ଧୀର ଗଳାରେ ଗୁଳି ଚଳାଇବାକୁ ହୁକୁମ ଦେଲେ।

ଏକା ସାଙ୍ଗରେ ତୁରିତେ ଗୁଡ଼ିଏ ଗୁଳି ଫୁଟିଲା। ସମୁଦାୟ ବଣଟା ଦୋହଲିଗଲା। ହାତୀର ଦେହରୁ ରକତର ଧାର ଛୁଟିଲା। ତଥାପି ସେ ପୋଲିସ୍ ଆଡ଼କୁ ଧାଇଁଲା। ପୋଲିସର ଅବିରାମ ଗୁଳି ବର୍ଷଣକୁ ଖାତିର୍ ନ କରି ସେ ପ୍ରବଳ ବେଗରେ ସେମାନଙ୍କୁ ଖେଦିବାକୁ ଲାଗିଲା। ହାତୀର ଶରୀରର ସବୁଠାରୁ ଦୁର୍ବଳ ଜାଗା ମଥା ଓ ଛାତିରେ ଗୁଳି ବାଜି ନ ଥିଲା। ଆତଙ୍କ ଓ ଯନ୍ତ୍ରଣାରେ ହାତୀଟା ଖୁବ୍ ଜୋରରେ ରଡ଼ି ଛାଡ଼ିଲା ଏବଂ ଶୁଣ୍ଢଟା ଆଗକୁ ବଢ଼ାଇ ଦେଲା। ଆତ୍ମରକ୍ଷା କରିବା ଲାଗି ହାତୀ ମଥା ନୁଆଁଇ ପ୍ରକାଣ୍ଡ ଦାନ୍ତ ଯୋଡ଼ାକ ହତିଆର ଭାବରେ ବାଗେଇ ଧରିଲା। ଗୋଟିଏ ଗୋଟିଏ ଦାନ୍ତର ଲମ୍ୱ ଅଢ଼େଇ ମିଟର ହେବ। ପୋଲିସ ଲୋକମାନେ ହୁକୁମ ମାନି ନିଜ ଜାଗାରେ ଠିଆ ହୋଇ ଅବିରାମ ଗୁଳି ଛାଡ଼ିଲେ।

କିନ୍ତୁ ହାତୀଟା ବାଡ଼ସବୁ ଭାଙ୍ଗି ରୁଜି ଚିକିଟକି କରି ଦେଇ ପଳାଇଲା। ପୋଲିସ ଲୋକେ ତା ପଛେ ପଛେ ଗୋଡ଼ାଇଲେ ସିନା, ମାତ୍ର ସହଜରେ ତାହାକୁ ଅନୁସରଣ କରି ପାରିଲେ ନାହିଁ। କାରଣ ହାତୀଟି ରାସ୍ତା ଛାଡ଼ି ବଣବୁଦା ଚୂରମାର କରି ଅଣନିଃଶ୍ୱାସୀ ହୋଇ ଛୁଟୁଥିଲା।





Digitized by srujan ka@gmail.com

# ଚାରି

ହତାଶ ହୋଇ ମେନେଜର କୋଠରୀ ଭିତରେ ଟହଲୁଥିଲା । ସେ ମନେ ମନେ ଭାବୁଥିଲା, ହାତୀଟି ଯାହା କ୍ଷତି କରିଛି ସେଥିକି କ୍ଷତିପୂରଣ ଦେବାକୁ ପଡ଼ିଲେ ତାହାର ସକଳ ସମ୍ପତ୍ତି କୁଆଡ଼େ ଉଡ଼ିଯିବ । ଏଣେ ହାତୀଟାକୁ ଗୁଳି କରି ମାରିଦେଲେ ତାହାର ଲୋକସାନର ସୀମା ରହିବ ନାହିଁ ।

ଏତିକି ବେଳେ ରୁଷିଆର ମସ୍କୋରୁ ତାରଟିଏ ଅଧ୍ୟାପକ ଭାଗନାରଙ୍କଠୁଁ ଆସିଲା । ସେଥିରେ ଲେଖା ଥିଲା– "ହାତୀର ପଳାୟନର ବିଷୟ ଖବରକାଗଜରୁ ଜାଣିଲି । ହାତୀକୁ ନ ମାରିବାକୁ ପୋଲିସକୁ ଅନୁରୋଧ କର । ଜଣେ ଲୋକ ପଠାଇ ହାତୀକୁ ଖବର ଦିଅ– ଭାଗନାର ବର୍ଲିନ୍‌କୁ ଆସୁଛନ୍ତି, ଫେରିଆସ । ହାତୀ ସେ କଥା ନ ଶୁଣିଲେ ତାହାକୁ ଗୁଳି କରି ମାରି ପାର ।"

ମେନେଜର ତାରଟା ଆଉ ଥରେ ପଢ଼ିଲା । ତା ମଥାରେ କିଛି ପଶିଲା ନାହିଁ । ତଥାପି କିଛି ସମୟ ପରେ ସେ ପୋଲିସ ଠାରୁ ସାମରିକ କାର୍ଯ୍ୟ ବନ୍ଦ ରଖିବାକୁ ହୁକୁମ ପାଇଲା । ସେ ଅଚିରେ ମାହୁନ୍ତକୁ ଉଡ଼ାଜାହାଜ ଯୋଗେ ହାତୀ ନିକଟକୁ ପଠାଇଲା ।



Digitized by srujan ka@gmail.com

ମାହୁନ୍ତ ଖଣ୍ଡିଏ ଧଳା ରୁମାଲ ହଲାଇ ହଲାଇ ଯାଇ ହାତୀକୁ ଅତିଶୟ ବିନୟରେ ଜଣାଇଲା- "ମହାଶୟ, ଅଧ୍ୟାପକ ଭାଗନାର ଆପଣଙ୍କୁ ଅଭିନନ୍ଦନ ଜଣାଇଛନ୍ତି । ସେ ଖୁବ୍ ଶୀଘ୍ର ବର୍ଲିନରେ ଆସି ପହଞ୍ଚିବେ, ଆଉ ଆପଣଙ୍କୁ ସର୍କସରେ ଭେଟିବେ । ତେଣୁ ଏବେ ଫେରିଗଲେ ଆପଣଙ୍କର କିଛି କ୍ଷତି ହେବ ନାହିଁ ।"

ହାତୀଟି ମନ ଦେଇ ସବୁ କଥା ଶୁଣିଲା, ଆଉ ମାହୁନ୍ତକୁ ତା ପିଠି ଉପରକୁ ଟେକି ନେଲା । ତା ପରେ ସେ ଧୀରେ ଧୀରେ ବର୍ଲିନ ଆଡ଼େ ଚାଲିଲା ।

ହାତୀ ଚାଲି ଚାଲି ଆସୁଥିଲା । କିନ୍ତୁ ଅଧ୍ୟାପକ ଭାଗନାର ନିଜର ସହକାରୀ ଦେନିସଭ ସହିତ ଉଡ଼ାଜାହାଜରେ ଆସି ଆଗେ ବର୍ଲିନରେ ପହଞ୍ଚିଲେ । ସଙ୍ଗେ ସଙ୍ଗେ ସର୍କସର ମେନେଜରକୁ ଯାଇ ଅଧ୍ୟାପକ ଭାଗନାର ପଚାରିଲେ- "କହନ୍ତୁ ତ, ଆପଣ ଏ ହାତୀଟାକୁ କିପରି ପାଇଲେ ?"

ମେନେଜର ଜବାବ ଦେଲା- "ଆଫ୍ରିକାର କଙ୍ଗୋରେ ନିକ୍ସ ନାମକ ଜଣେ ନଡ଼ିଆ ଓ ବାଦାମ ବେପାରୀ ମାଥାଦୀ ସହରରୁ କିଛି ଦୂରରେ ବାସ କରୁଥିଲା । ଦିନେ ତା ପୁଅଝିଅମାନେ ବଗିଚାରେ ଖେଳୁଥିଲେ । ସେତିକି ବେଳେ ଅଚାନକ ହାତୀଟି ଆସି ସେଠାରେ ହାଜର ହେଲା, ଆଉ ନାନା ରକମ ଖେଳ ଦେଖାଇଲା । ପିଲାମାନେ ହସି ହସି ଗଡ଼ିଗଲେ । ତା ନାମ ଦେଲେ ହୈଟୀ-ଟୈଟୀ, ମାନେ ଅଭିମାନୀ । କିଛି ଦିନ ପରେ ହାତୀର ଏହି ନାମଟା ଅଭ୍ୟାସ ହେଇଗଲା । ଆମେ ତାହାକୁ ଆପଣେଇ ନେଲୁ । ଆଇନ ଅନୁଯାୟୀ ସେ କିଣା ହୋଇଛି । ଏଥିରେ କେହି କିଛି ଆପତ୍ତି ଉଠାଇ ପାରିବେ ନାହିଁ ।"

ଭାଗନାର ପୁଣି ପଚାରିଲେ- "ଆଚ୍ଛା, ହାତୀର ଦେହରେ କିଛି ବିଶେଷ ଦାଗ ଅଛି କି ?"

"ତା ମଥାରେ କେତେଗୁଡ଼ାଏ ବଡ଼ ବଡ଼ କ୍ଷତର ଦାଗ ଅଛି । ସେଗୁଡ଼ାକ ଦେଖିଲେ ସର୍କସରେ ଦେଖଣାହାରୀଙ୍କୁ ଖରାପ ଲାଗି ପାରେ



Digitized by srujan ka@gmail.com

ବୋଲି, ତା ମଥାରେ ଗୋଟାଏ ଥୋପାବାଲା ରେଶମୀ ନକ୍ସା-କଟା ଟୋପି ପିନ୍ଧାଇ ଦିଆ ହୋଇଥାଏ ।''

ଭାଗନାର କହିଲେ- ''ତାହା ହେଲେ ଏଥିରେ କିଛି ସନ୍ଦେହ ନାହିଁ ଯେ ସେହି ହାତୀଟା ହେଉଛି ସାପୀଯେନ୍ସ, ମୋରି ହାତୀ । କଙ୍ଗୋରେ ଏକ ଅଭିଯାନରେ ମୁଁ ତାହାକୁ ଧରିଥିଲି ଏବଂ ତାଲିମ ଦେଇଥିଲି । ଦିନେ ସେ ବଣକୁ ଯାଇ ଆଉ ଫେରିଲା ନାହିଁ । ଢ଼େର୍ ଖୋଜାଖୋଜି କଲି, କିନ୍ତୁ ତାହାକୁ ଆଉ ପାଇଲି ନାହିଁ ।''

''ତାହା ହେଲେ ହାତୀଟା ଆପଣଙ୍କର ବୋଲି ଦାବୀ କରୁଛନ୍ତି ତ ?''- ମେନେଜର ପଚାରିଲା ।

''ନା, ନା, ମୁଁ କୌଣସି ଦାବୀ ଉଠାଉ ନାହିଁ, ହୁଏତ ହାତୀଟି ତାହା କରି ପାରେ । ଅସଲ କଥା ହେଉଛି କେତେକ ନୂଆ ଢ଼ଙ୍ଗରେ ମୁଁ ତାହାକୁ ତାଲିମ ଦେଇଛି । ତାହାର ମାନସିକ କ୍ଷମତା ଅସାଧାରଣ । ସେଟା ତ ଆପଣ ନିଜେ ଦେଖିଛନ୍ତି । ଆପଣଙ୍କ ସର୍କସର ଖେଳରେ ହାତୀର ଅଲୌକିକ କାମସବୁ ଖବର କାଗଜରେ ପଢ଼ିଲା କ୍ଷଣି, ମୁଁ ଠିକ୍ କଲି ଯେ ସେହି ନିଶ୍ଚୟ ମୋରି ହାତୀ ସାପୀଯେନ୍ସ- ପଢ଼ିବା । ଲେଖିବା, ହିସାବ କରିବା- ଏସବୁ କାମ କେବଳ ସେ କରିପାରେ । ମୁଁ ଏସବୁ ପାଠ ତାହାକୁ ଶିଖାଇଛି । ବର୍ଲିନରେ ସେ ସଭିଙ୍କୁ ଆନନ୍ଦ ଦେଉଥିଲା, ଆଉ ଖୁବ୍ ଭଲରେ ବି ରହିଥିଲା । କିନ୍ତୁ ଦିନେ ଅଚାନକ କୌଣସି କାରଣରୁ ସେ ଚଟିଗଲା । ତେଣୁ ସଙ୍ଗେ ସଙ୍ଗେ ନିଜ ବାଟ ବାଛି ନେବାର ଅଧିକାର ମୁଁ ତାହାକୁ ଦେଲି । ଆପଣ ତ ଏବେ ବୁଝି ପାରିଲେ, ଆପଣ କେବେ ଜୋର କରି ହାତୀଟିକୁ ନିଜ ପାଖରେ କୌଣସି ମତେ ରଖି ପାରିବେ ନାହିଁ । ତେବେ ଆପଣ ମୋତେ ଭାବିବେ ନାହିଁ ଯେ ମୁଁ ତାହାକୁ ଆପଣଙ୍କଠୁଁ ଛଡ଼ାଇ ନେବାକୁ ଆସିଛି । ମୁଁ ତା ସାଙ୍ଗରେ ଖାଲି ପଦେ ଅଧେ କଥା ହେବି । ସେ ଏଠି ଯେଉଁଥି ପାଇଁ ଚଟି ଯାଇଛି, ଆପଣ ସେଟା ସୁଧାରି ଦେଲେ ସେ ନିଶ୍ଚୟ ଆପଣଙ୍କ ପାଖରେ ରହିବାକୁ ରାଜି ହେବ ।''



Digitized by srujan ka@gmail.com

"ହେଉ, ଆପଣ ତାହା ସହିତ କଥା ହୋଇ ପାରନ୍ତି । ସେ ଆପଣଙ୍କୁ ଭେଟିବାକୁ ମଧ ବ୍ୟାକୁଳ । ତାରରେ ଖବର ଆସିଛି, ସେ ଘଣ୍ଟାକୁ କୋଡ଼ିଏ କିଲୋମିଟର ବେଗରେ ଧାଉଁଛି । ନିଶ୍ଚୟ ସେ ସଞ୍ଜ ବେଳେ ଆସି ଏଠି ହାଜର ହେବ" ମେନେଜର ଜଣାଇଲା ।

ଠିକ୍ ସଞ୍ଜ ବେଳେ ରଙ୍ଗଭୂମିରେ ମେନେଜର, ଅଧ୍ୟାପକ ଭାଗନାର ଓ ସହକାରୀ ଦେନିସଭ ଛିଡ଼ା ହୋଇଥିଲେ । ଖେଳୁଆଡ଼ମାନଙ୍କ ପ୍ରବେଶ ପଥ ଦେଇ ହାତୀ ହୈଟୀ-ଟୈଟୀ ପିଠିରେ ମାହୁନ୍ତକୁ ବସାଇ ଭିତରକୁ ପଶିଗଲା । ଅଧ୍ୟାପକ ଭାଗନାରଙ୍କ ଉପରେ ନଜର ପଡ଼ିଲା କ୍ଷଣି ସେ ଧାଇଁ ଯାଇ ଶୁଣ୍ଢ ବଢ଼ାଇ ତାହାଙ୍କ ସହ କରମର୍ଦ୍ଦନ କଲା, ଏବଂ ମାହୁନ୍ତକୁ ଓହ୍ଲାଇ ଦେଇ ଭାଗନାରଙ୍କୁ ତା ପିଠି ଉପରକୁ ଉଠାଇନେଲା । ଅଧ୍ୟାପକ ଭାଗନାର ହାତୀର ଖୁବ୍ ବଡ଼ କାନଟା ଧରି ଫୁସ୍‌ଫୁସ୍ କରି କଅଣ କହିଲେ । ତହୁଁ ହାତୀ ମଥା ହଲାଇ ତା ଶୁଣ୍ଢର ଅଗଟା ତୁରିତେ ଅଧ୍ୟାପକଙ୍କ ମୁଖ ପାଖକୁ ନେଇଗଲା । କିଛି ସମୟ ଏହିପରି ହଇଚଇ ଚାଲିଲା ।

ମେନେଜର ଅଧୀର ହୋଇ ପଚାରିଲା- "ହାତୀଟା କଅଣ ଠିକ୍ କହିଲା ?"

ଅଧ୍ୟାପକ ଜବାବ ଦେଲେ- "ସେ କିଛି ଦିନ ଛୁଟି ନେବାକୁ ମନ କରିଛି । ଛୁଟି ସରିଲେ ସେ ସର୍କସକୁ ଫେରିବାକୁ ରାଜି ଅଛି, ମାତ୍ର ଗୋଟିଏ ସର୍ତ୍ତରେ । ତାହା ହେଲା ଅଭଦ୍ର ଆଚରଣ ସକାଶେ ମାହୁନ୍ତକୁ ତା ପାଖରେ କ୍ଷମା ମାଗିବାକୁ ହେବ, ଆଉ ତାହାକୁ କଥା ଦେବାକୁ ହେବ ଯେ ସେ ଆଉ କେବେ ହାତୀ ଉପରେ ବଳ ପ୍ରୟୋଗ କରିବ ନାହିଁ ।"

ଅବାକ୍ ହେବାର ଛଳନା କରି ମାହୁନ୍ତ ପଚାରିଲା- "ଏଁ, ମୁଁ ହାତୀଟିକୁ ମାରିଛି ?"

ଅଧ୍ୟାପକ ଭାଗନାର ଜବାବ ଦେଲେ- "ହଁ, ତୁମେ ତ ଝାଡ଼ୁରେ ପିଟିଛ !"



Digitized by srujan ka@gmail.com

"ଓହୋ, ସେ ବୋଧହୁଏ ଦେଶର ରାଷ୍ଟ୍ରପତି ?"

ମେନେଜର ପାଟି କଲା- "ସେତିକି ଥାଉ। ତୁମେହିଁ ସବୁ ଗଣ୍ଡଗୋଳର ମୂଳ। ସେଥିପାଇଁ ତୁମକୁ ଦଣ୍ଡ ଦିଆଯିବ। ହଁ, କହନ୍ତୁ ତ ଅଧ୍ୟାପକ ଭାଗନାର, ହୈଟୀ-ଟୈଟୀ କେବେ ଛୁଟି ନେଇ କୁଆଡ଼େ ଯିବ ?"

ଭାଗନାର ଜଣାଇଲେ- "ତା ସହିତ ଆମେ ପାଦରେ ଚାଲି ଚାଲି ବୁଲିବୁ। ତା ଚଉଡ଼ା ପିଠି ଉପରେ ମୁଁ ଓ ଦେନିସଭ ଦୁହେଁ ମଜାରେ ବସି ପାରିବୁ। ସେ ସୁଇଜରଲାଣ୍ଡର ମଇଦାନରେ ଚରି ବୁଲିବ ବୋଲି ମୋତେ କହିଛି।"

ସକାଳୁ ସକଳ ଆୟୋଜନ ସରିଥିଲା। କେବଳ କିଛି ଦରକାରୀ ଦରବ ଘେନି ଅଧ୍ୟାପକ ଭାଗନାର ଓ ସହକାରୀ ଦେନିସିଭ ହାତୀର ପିଠି ଉପରେ ବସିଲେ। ମେନେଜର ଆସି ସେମାନଙ୍କୁ ବିଦାୟ ଦେଲା।

ହାତୀ ପହିଲେ ଧୀରେ ଧୀରେ ଚାଲିଲା। କିନ୍ତୁ ସହରର ଶେଷ ଘରଟା ପରେ ସେ ଖୋଲା ସଡ଼କରେ ଗତି ବଢ଼ାଇ ଘଣ୍ଟାକୁ ବାର କିଲୋମିଟର ବେଗରେ ଧାଇଁଲା।

ହାତୀ ଉପରେ ବସି ଅଧ୍ୟାପକ ଭାଗନାର କହିଲେ- "ଦେନିସଭ, ଏଣିକି ହାତୀର ସବୁ କଥା ତୁମକୁ ଦେଖିବାକୁ ହେବ। ତାହାକୁ ଭଲ ଭାବରେ ବୁଝିବା ଲାଗି ତାହାର ଅସାଧାରଣ ଅତୀତର ଇତିହାସଟା ତୁମର ଜାଣିବା ଦରକାର। ଏହି ଟିପା ଖାତାଟା ନିଅ। ତୁମ ଆଗରୁ ଏହି ଜାଗାରେ ଯେ ଥିଲା, ଏଟା ହେଉଛି ସେହି ପେସକଭର ଦିନଲିପି। ସେ ମୋ ସହିତ କଙ୍ଗୋକୁ ଯାଇଥିଲା। ଗୋଟାଏ ଖରାପ ଘଟଣା ଘଟିଥିଲା। ସେଟା ପରେ ତୁମକୁ କହିବି। ଏକ୍ଷଣି ଏଟା ପଢ଼ି ଦେଖ।"

ଦେନିସିଭ ଦିନଲିପିଟି ଅଧ୍ୟାପକଙ୍କ ହାତରୁ ନେଇ ତା ଉପରେ ଆଖି ବୁଲାଇଲା।





Digitized by srujan ka@gmail.com

## ପାଞ୍ଚ

ଦେନିସଭ ଦିନଲିପିଟି ପଢ଼ିବାକୁ ଲାଗିଲା ।

**୨୭ ମାର୍ଚ୍ଚ :**

ମାଲୁମ ହେଉଛି, ଅଧ୍ୟାପକ ଭାଗନାରଙ୍କ ଗବେଷଣାଗାରଟି ସତେକି ଗୋଟିଏ ଅଲୌକିକ ଜାଗା । ରସାୟନ ଠାରୁ ଆରମ୍ଭ କରି ଅସ୍ଥି ବିଦ୍ୟା ସମେତ ଜ୍ଞାନର ସକଳ କ୍ଷେତ୍ର ଏଠାରେ ପୂରି ରହିଛି । ମାଇକ୍ରୋସ୍କୋପ ଇତ୍ୟାଦି ଯାବତୀୟ 'ସ୍କୋପ'ର ଯନ୍ତ୍ରଗୁଡ଼ିକରେ ଘରଟି ଭରପୂର । ଶ୍ରବଣର ଗୁଡ଼ିଏ ଯନ୍ତ୍ର ମଧ୍ୟ ରହିଛି । କାଚ, ରବର, ତମ୍ବା, ସୁନା, ଆଲୁମିନିୟମ, ଇତ୍ୟାଦି ନାନା ଧରଣର ଧାତୁ ଦରବରେ ଘରଟା ପୂରିଛି । କୟେଲ, ଟେଷ୍ଟ ଟିଉବ, ବତି, ଫିଉଜ, ସୁଇଚ, ବୋତାମ, ଇତ୍ୟାଦି ଜରିଆରେ ମାନସ-ଜଟିଳତା ପ୍ରତିଫଳିତ ହେଉଛି । ପାଖ କୋଠରୀଟି ଗୋଟିଏ ମୂର୍ତ୍ତିଶାଳା ଭଳି– ସେଠାରେ ଭାଗନାର ଠେକୁଆର କାନ, କୁକୁରର ହୃତ୍‌ପିଣ୍ଡ, ମେଷର ମୁଣ୍ଡ, ମଣିଷର ମଥାକୁ ବଞ୍ଚାଇ ରଖିଛନ୍ତି । ଅଧ୍ୟାପକ ସେହି ମଥା ସହ କଥାଭାଷା ହୁଅନ୍ତି । ମୋ କାମ ହେଲା ଏକ ବିଶେଷ ଧରଣର ଦ୍ରବଣ ଦ୍ୱାରା ସେହି ମଥାକୁ ତାଜା ରଖିବା ।



Digitized by srujan ka@gmail.com

୨୯ ମାର୍ଚ୍ଚ :

ଅଧ୍ୟାପକ ଭାଗନାର କେଉଁ ବିଷୟରେ ଜଣେ ମଣିଷର ମଗଜ ସହ ଖୁବ୍ ଜୋରରେ କଥା ହେଉଛନ୍ତି ।

୩୦ ମାର୍ଚ୍ଚ :

ସଞ୍ଜ ବେଳେ ଭାଗନାର ମୋତେ କହିଲେ- ''ଏହି ମଗଜଟି ହେଉଛି ଜଣେ ତରୁଣ ଜର୍ମାନ ବୈଜ୍ଞାନିକଙ୍କର । ସେ ଆବିସିନିୟାରେ ମରି ଯାଇଥିଲେ, କିନ୍ତୁ ତାହାଙ୍କ ମଗଜଟି ଏଯାଏ ବଞ୍ଚି ରହିଛି ଏବଂ ଭାବୁଛି ମଧ୍ୟ । କିନ୍ତୁ କେତେ ଦିନ ହେଲା ସେଟା ବିରକ୍ତ ଦିଶୁଛି । ତା ମଥାରେ ମୁଁ ଯେଉଁ ଆଖିଟା ଲଗାଇ ଦେଇଥିଲି, ସେଥିରେ ସେ ଖୁସି ନୁହେଁ । ଖାଲି ଦେଖିବାରେ ସେ ସନ୍ତୋଷ ପାଉ ନାହିଁ, ଶୁଣିବାକୁ ବି ଚାହେ, ଖାଲି ଗୋଟିଏ ଜାଗାରେ ପଡ଼ି ନ ରହି ବୁଲାବୁଲି କରିବାକୁ ମଧ୍ୟ ଚାହେ । ମାତ୍ର ସେ ଆଗରୁ ସେହି ଅଭିଳାଷଟି ଜଣାଇଥିଲେ ମୁଁ ଆନାଟମୀ ଥିଏଟାରରୁ ସୁବିଧା ମୁତାବକ ଗୋଟିଏ ଲାସ ଯୋଗାଡ଼ କରି ତା ମଗଜଟା ସେହି ଖପୁରୀ ଭିତରେ ବସାଇ ଦେଇ ଥାଆନ୍ତି । ଏବେ ତ ଦେଖି ପାରୁଛନ୍ତି, ସେହି ମଗଜଟା ଏତେ ବଡ଼ ହେଲାଣି ଯେ କୌଣସି ମଣିଷର ଖପୁରୀରେ ସେଟା ଆଉ ଲଗାଯାଇ ପାରିବ ନାହିଁ ।''

''ତାହା ହେଲେ ଆପଣ କଅଣ କହିବାକୁ ଚାହାନ୍ତି ଯେ ମଣିଷ ଛଡ଼ା ସେ ଆଉ କିଛି ଜାନୁଆର ହୋଇ ପାରିବ ?''

''ହଁ, ଠିକ୍ ସେୟା । ସେ ହାତୀ ହୋଇ ପାରେ । ଅବଶ୍ୟ ହାତୀର ମଗଜ ପରି ଏତେ ବଡ଼ ସେଟା ଏଯାଏ ହୋଇ ନାହିଁ । ତେବେ ସମୟ ଲାଗିବ ।''

''ତା ମାନେ ଆପଣ ସେଟାକୁ ହାତୀ କରିଦେବାକୁ ଚାହାନ୍ତି ?''

''ସେଥିରେ ବା ଆପତ୍ତି କଅଣ ? ତାହାକୁ ଆଗରୁ ଜଣାଇଛି ଯେ ତା ମଗଜଟା ବଡ଼ ହେଲେ ଗୋଟିଏ ହାତୀର ଖପୁରୀ ଭିତରେ ବସାଇଦେଲେ ସେ ଆହୁରି ଶହେ କି ଦି ଶହ ବରଷ ବଞ୍ଚି ପାରିବ । ଏହି ପ୍ରସ୍ତାବରେ ସେ ମଧ୍ୟ ଏକମତ ହୋଇଛି ।''



Digitized by srujan ka@gmail.com

ଦେନିସଭ ଦିନଲିପି ଉପରୁ ଆଖି ଉଠାଇ ଅଧ୍ୟାପକ ଭାଗନାରଙ୍କୁ ପଚାରିଲା- ''ମାନେ, ଯେଉଁ ହାଡୀଟି ଉପରେ ଆମେ ବସିଛୁ ?''

''ହଁ, ତା ମଗଜଟା ହେଉଛି ମଣିଷର। ତୁମେ ପଢ଼ି ଯାଅ, ମୋତେ ଲେଖିବାରେ ବାଧା ଦିଅ ନାହିଁ''- ଅଧ୍ୟାପକ ବୁଝାଇଦେଲେ।

**୩୧ ମାର୍ଚ୍ଚ :**

ଆଜି ହାତୀର କରୋଟିଟା ଆସିଲା। ଅଧ୍ୟାପକ ସେଟାକୁ ଆଡ଼ା ଆଡ଼ି ଭାବରେ କରତରେ କାଟି ପକାଇଲେ। ସେ କହିଲେ- ''ମଗଜଟା ଭିତରେ ବସାଇବା ଲାଗି ଏଟା ନିହାତି ଦରକାର। ଗୋଟିଏ ଖପୁରୀ ଭିତରେ ବସାଇଲା ବେଳେ ଏଥିରେ ଯଥେଷ୍ଟ ସୁବିଧା ହେବ। ଦେଖୁଛ ତ, ଖପୁରୀର ଉପର ଭାଗଟା ଏକାବେଳେ ଫାଙ୍କା। ସାଧାରଣ ଲୋକେ ଭାବନ୍ତି, ଏଇଟା ହୁଏତ ମଗଜର ଜାଗା। କିନ୍ତୁ ଅସଲ ମଗଜଟା ଅତି ଛୋଟ, ମଥାର ଖୁବ୍ ପଛରେ କାନ କତିରେ ତାହା ଲୁଚି ରହିଥାଏ। ସେଇଥିପାଇଁ ମଥାର ସାମନାରେ ଗୁଳି ବାଜିଲେ ହାଡ଼ର ପାଚେରୀଗୁଡ଼ିକ ଭେଦି ତାହା ଗଳି ଯାଏ ସିନା, ମାତ୍ର ମଗଜଟା ଅକ୍ଷତ ରହିଥାଏ।''

ଆମେ ଦୁହେଁ ମଗଜର ଖପୁରୀ ଭିତରେ କେତୁଟା କଣା କଲୁ। ଏହି କଣା ଭିତରେ ନଳୀ ପଶାଇ ମଗଜକୁ ପୁଷ୍ଟିକର ଦ୍ରବଣ ଖୁଆଇବାକୁ ହେବ। ତା ପରେ ଅତି ହୁସିଆରିରେ ଅଧେ ଖପୁରୀ ଭିତରେ ମଗଜଟା ବସାଇ ଦିଆଗଲା। ଅଧ୍ୟାପକ ବାକି ଅଧକ ଖପୁରୀ ଯୋଡ଼ିଲା ବେଳେ କହିଲେ- ''ଫାଙ୍କଟା ସିନା ଏକ୍ଷଣି ପୂରିଲା ନାହିଁ। ତେବେ କ୍ରମେ କ୍ରମେ ତାହା ବଢ଼ିଯିବ।''

ସତ କହିବାକୁ ଗଲେ, ଅଧ୍ୟାପକ ଭାଗନାରଙ୍କ ପରୀକ୍ଷା ଯେ ସଫଳ ହେବ, ଏ ଭରସା ମୋର ଆଦୌ ନ ଥିଲା। ବାସ୍ତବିକ ଏଟା ହେଲା ଗୋଟାଏ ଭୟଙ୍କର ଜଟିଳ ବିଷୟ। ଏଥିରେ ବାଧା ବି ଅନେକ ରହିଛି। ପ୍ରଥମେ ଗୋଟିଏ ଜୀଅନ୍ତା ହାତୀ ଲୋଡ଼ା। ଆଫ୍ରିକା କି ଭାରତବର୍ଷରୁ ଗୋଟିଏ ହାତୀ ଆଣିଲେ ବହୁତ ଖରଚ ପଡ଼ିବ। ତାହା



Digitized by srujan ka@gmail.com

ଛଡ଼ା କୌଣସି କାରଣରୁ ସେହି ହାତୀଟା ଉପଯୁକ୍ତ ହୋଇ ନ ପାରେ । ତେଣୁ ଅଧ୍ୟାପକ ଠିକ୍ କଲେ. ବୈଜ୍ଞାନିକ୍ଙ୍କ ମଗଜଟା ନେଇ ନିଜେ ଆଫ୍ରିକାର କଙ୍ଗୋ ଦେଶକୁ ଯିବେ। ସେଠାରେ ସେ ଗୋଟିଏ ହାତୀ ଧରି ମଗଜ ରୋପଣ ସକାଶେ ଅପରେସନ ଚଳାଇବେ। କହିବା ଭାରି ସହଜ, କିନ୍ତୁ ଗୋଟିଏ ଜୀଅନ୍ତା ହାତୀ ଉପରେ ଜଟିଳ ଅପରେସନ କରି ଦୁଇଟି ଅଲଗା ଅଲଗା ଦେହର ପ୍ରକ୍ରିୟାକୁ ମିଳାଇ ଏକାକାର କରିବା ବାସ୍ତବିକ ଏଡ଼େ ସୁବିଧାଜନକ ନୁହେଁ।





Digitized by srujan ka@gmail.com

## ଛଅ

**୨୭ ଜୁନ୍ :**

ଏଥର ଗତ କେତେ ଦିନର ଘଟଣାବଳୀକୁ ଗୋଟିଏ ଦଫାରେ ଲେଖିବାକୁ ହେବ ।

ଏହି ଯାତ୍ରାର ଯଥେଷ୍ଟ ଅଭିଜ୍ଞତାଗୁଡ଼ିକ ପ୍ରାୟ ପ୍ରୀତିକର ନୁହେଁ । ଜାହାଜରେ ଥିଲା ବେଳେ ମଶାଗୁଡ଼ାକ ବେଢ଼ି ଯାଉଥିଲେ । ଚଉଡ଼ା ନଦୀଟା ଅବଶ୍ୟ ହ୍ରଦ ଭଳି । ତା ମଝା ମଝିକୁ ଗଲେ ମଶା ଅବଶ୍ୟ କମ । କିନ୍ତୁ କୂଳ ପାଖକୁ ଆସିଲା କ୍ଷଣି ମଶାର ମେଘ କୁଆଡୁ ଆସି ଘୋଟି ଯାଏ । ଗାଧୋଇବାକୁ ଗଲେ କଳା କଳା ମାଛି ଦେହରେ ବସି ରକ୍ତ ଶୋଷି ନିଅନ୍ତି । କୂଳକୁ ଆସି ଚାଲି ଚାଲି ଗଲେ ଛୋଟ ଛୋଟ ପିମ୍ପୁଡ଼ି ଓ ପୋକସବୁ ଦେହରେ ଲାଗି ଯାଆନ୍ତି । ତାହା ଛଡ଼ା ସାପ, ବିଛା, ମହୁମାଛି ଓ ବିରୁଡ଼ି ସବୁ ମିଶି ଭୀଷଣ ଉପଦ୍ରବ ମଧ୍ୟ କରନ୍ତି ।

ନିବିଡ଼ ବଣ ଭେଦ କରି ଆଗେଇବା ବାସ୍ତବିକ ଅତିଶୟ ବିପଦଜନକ । ଏଣେ ଖୋଲା ଜାଗାରେ ଚାଲିବା ବି କମ୍ ଦୁରୂହ ନୁହେଁ । ବହଳ ଘାସ ଓ ମୋଟା ଲମ୍ବା ନାଳ ଭିତରେ ଗଲା ବେଳେ ମାଲୁମ ହେଉଥିଲା, ସତେକି ଦୁଇଟା ସାଗୁଆ କାନ୍ଥର ମଝିରେ ଆମେ



Digitized by srujan ka@gmail.com

ଯାଉଛୁଁ । ଚଉଦିଗରେ କିଛି ଦିଶୁ ନ ଥିଲା । ଭାରି ଭୟ ଲାଗୁଥିଲା । ଘାସର ଧାରୁଆ ଅଗରେ ହାତ-ମୁଖ ଛିଡ଼ି ଯାଉଥିଲା । ମାଟିରେ ପାଦ ପକାଇଲେ କାଦୁଅରେ ଗୋଡ଼ ଗଳି ଯାଉଥିଲା । ଗଛର ପତର ଉପରୁ ବରଷାର ପାଣି ପଡ଼ି ଦେହ ଓଦା କରି ଦେଉଥିଲା । ବଣ ଓ ତୃଣ-ଭୂମିର ମଝିରେ ଜଣକ ପାଇଁ ଯିବାକୁ ବାଟ ପଡ଼ିଥିଲା । ଏହି ମୁଲକରେ ପାଦ-ଚଲା ବାଟହିଁ ଏକମାତ୍ର ଯୋଗାଯୋଗ । ଆମ ଦଳରେ କୋଡ଼ିଏ ଜଣ ଲୋକ ଥିଲେ । ତା ଭିତରୁ ଆଫ୍ରିକାର ଉପଜାତିର ଅଠର ଜଣ ଲୋକ ଆମର ଜିନିଷପତ୍ରସବୁ ବୋହୁଥିଲେ ଏବଂ ଆମକୁ ବାଟ କଢ଼ାଉଥିଲେ ।

ଅବଶେଷରେ ଆମେ ଲକ୍ଷ୍ୟସ୍ଥଳରେ ପହଞ୍ଚିଲୁ । ତୁମ୍ବା ହ୍ରଦ କୂଳରେ ଆମେ ଛାଉଣି ପକାଇଲୁ । ଗୋଟିଏ ଶୁଖିଲା କୁଦ ଉପରେ ଦୁଇଟା ବଡ଼ ବଡ଼ ତମ୍ବୁ ଟଣା ହୋଇଥିଲା । ଚଉଦିଗରେ ଅନେକ ଦୂର ଯାଏ ଖୁବ୍ ଭଲ ଦିଶୁଥିଲା । ଅଧ୍ୟାପକ ଭାଗନାର ଅତି ସାବଧାନରେ ବୈଜ୍ଞାନିକ ରିଙ୍ଗଙ୍କ ମଗଜଟା ଆଣିଥିଲେ । ସେଟା ଶବ୍ଦ, ରଙ୍ଗ ଓ ଅନ୍ୟାନ୍ୟ ଅନୁଭୂତିର ରାଇଜକୁ ଫେରିଯିବା ଲାଗି ଆକୁଳ ହେଉଥିଲା । ଅଧ୍ୟାପକ ତାହାକୁ ଆଶ୍ୱାସନା ଦେଉଥିଲେ ଯେ ତାହାକୁ ଆଉ ବେଶି ଦିନ ଅପେକ୍ଷା କରିବାକୁ ପଡ଼ିବ ନାହିଁ ।

**୨୯ ଜୁନ :**

ଆମ ଛାଉଣିରେ ଖୁବ୍ ହୈଚୈ ପଡ଼ିଛି । କେତେ ଜଣ ଦେଶୀ ଲୋକ ଆମ ଛାଉଣି ପାଖରେ ସିଂହର ପାଦର ଦାଗ ଦେଖିଛନ୍ତି । ଯେଉଁମାନେ ବନ୍ଧୁକ ଚାଳନା ଜାଣିଥିଲେ, ସେମାନଙ୍କୁ ଗୋଟିଏ ଲେଖାଏଁ ରାଇଫେଲ ଦେଲୁ । ଭୋଜନ ପରେ ଗୁଳି ଫୁଟାଇବାର ମହଡ଼ା ଚାଲିଲା । ବନ୍ଧୁକ ଛାଡ଼ିଲା ବେଳେ ସେମାନେ ରାଇଫେଲର ଧକ୍କାରେ ଓଲଟି ପଡ଼ି ଆନନ୍ଦରେ ପାଟିଗୋଳ କରୁଥିଲେ ଏବଂ ଭୂଇଁରେ ଲୋଟି ଯାଉଥିଲେ ।



Digitized by srujan ka@gmail.com

୩୦ ଜୁନ୍ :

କାଲି ରାତିରେ ସିଂହଟା ଛାଉଣିର ଖୁବ୍ ପାଖକୁ ଚାଲି ଆସିଥିଲା । ତହିଁର ଅସଲ ପ୍ରମାଣ ବି ମିଳିଲା । ସିଂହଟା ଗୋଟିଏ ବଣୁଆ ଘୁଷୁରିକୁ ଟିକି ଟକି କରି ଝୁଣିଝାଣି ଖତମ କରି ଦେଇଥିଲା । ତା ହାଡ଼ ଗୋଡ଼ସବୁ ସେଠାରେ ପଡ଼ିଥିଲା । ଦେଶୀ ଲୋକେ ଏହା ଦେଖି ଡ଼ରିଗଲେ । ରାତି ନ ହେଉଣୁ ସେମାନେ ଆମ ତମ୍ବୁ କତିରେ ଆସି ଜମା ହେଲେ ଏବଂ ରାତି ସାରା ନିଆଁ ଜଳାଇଲେ । ସିଂହର ଗର୍ଜନ ମୋ କାନରେ ଆସି ବାଜିଲା କ୍ଷଣି ମୋ ରକତ ବରଫ ପାଲଟି ଗଲା । ମୁଁ ପ୍ରାୟ ମାଟି ତଳେ ଲୁଚି ରହିଲି । କିନ୍ତୁ ସିଂହର ଗର୍ଜନ ଅଧ୍ୟାପକ ଭାଗନାରଙ୍କ



କାନରେ ଆଦୌ ପଶୁ ନ ଥିଲା । ଆଜି ସକାଳେ ଜଳଯୋଗ ପରେ ସେ ମୋତେ ଜଣାଇଲେ- "କାଲି ସକାଳେ ମୁଁ ବଣ ଭିତରକୁ ଯିବି । ଲୋକମାନେ କହୁଛନ୍ତି, ହ୍ରଦ ଯାଏ ପୁରୁଣା ହାତୀ-ଚଲା ବାଟଟାଏ ଅଛି । ଆମ ଛାଉଣିଠୁଁ ଅଳପ ଦୂରକୁ ହାତୀସବୁ ପାଣି ପିଇବାକୁ ଆସନ୍ତି । କିନ୍ତୁ ହାତୀମାନେ ପ୍ରାୟ ଚାରଣ ଭୂମି ବଦଳାନ୍ତି । ବଣ ଭିତରେ ସେମାନେ ଯେଉଁ ବାଟଟା କରିଥିଲେ ସେଟା ବୁଜି ଗଲାଣି । ସେଥିରୁ ମାଲୁମ ହେଉଛି, ସେମାନେ ଆହୁରି ଦୂରକୁ ଖସି ଗଲେଣି । ଯାହା ହେଉ, ସେମାନଙ୍କୁ ଖୋଜି ବାହାର କରିବାକୁ ହେବ ।"



Digitized by srujan ka@gmail.com

''କିନ୍ତୁ ଆପଣ ନିଶ୍ଚୟ ଜାଣନ୍ତି ତ, ଗୋଟିଏ ସିଂହ ପାଖ ଆଖରେ ଘୂରି ବୁଲୁଛି ? ରାଇଫେଲ ନ ନେଇ ଏକା ଗଲେ ଘୋର ବିପଦ କିଣିବେ''- ମୁଁ କହିଲି ।

''କୌଣସି ଜାନୁଆରକୁ ମୋର ଡର ନାହିଁ''- ସେ ହସି ପକାଇଲେ ।

''ତାହା ହେଲେ ଆପଣ କଅଣ ରାଇଫେଲ ନ ନେଇ ସେଠାକୁ ଯିବେ ?''

ଅଧ୍ୟାପକ ଖାଲି ମଥା ଟୁଙ୍ଗାରିଲେ ।

**୨ ଜୁଲାଇ :**

ରାତିରେ ପୁଣି ସିଂହର ରଡ଼ି ଶୁଭିଲା । ମୋ ଛାତି ତ ହେମାଳ ହେଇଗଲା । ପର ଦିନ ସକାଳେ ମୁଁ ତମ୍ବୁର ବାହାରେ ଗାଧୋଉଥିଲି । ଏତିକି ବେଳେ ଅଧ୍ୟାପକ ଭାଗନାର ଅନ୍ୟ ତମ୍ବୁରୁ ବାହାରି ଆସିଲେ । ସେ ଅଭିଯାନରେ ବାହାରିବାକୁ ତିଆର ହୋଇଥିଲେ, କିନ୍ତୁ କାନ୍ଧରେ ଝୁଲା କି ରାଇଫେଲ ନ ଥିଲା । ସେ ସାବଧାନରେ ପାଦ ପକାଇ ଆଗେଇଲେ । ପାହାଡ଼ରୁ ତଳକୁ ଗଡ଼ି ଆସିଥିବା ବାଟ ପାଖରେ ସେ ଉପରକୁ ହାତ ଟେକିଲେ । ସେତିକି ବେଳେ ଏପରି ଗୋଟାଏ ଅଲୌକିକ ଘଟଣା ଘଟିଲା ଯେ ମୁଁ ଓ ଦେଶୀ ଲୋକମାନେ ସମସ୍ତେ ଚକିତ ହୋଇ ପାଟି କଲୁ ।

ପହିଲେ ତାଙ୍କର କଠିନ ଶରୀରଟା ସର୍କସର ଖେଳୁଆଡ଼ଙ୍କ ପରି ଶୂନ୍ୟରେ ଧୀରେ ଧୀରେ ଡ଼ିଗ୍‌ବାଜି ଖାଇବାକୁ ଲାଗିଲା । ତା ପରେ କ୍ରମେ କ୍ରମେ ଡ଼ିଗ୍‌ବାଜିର ଗତି ଦ୍ରୁତ ହେଲା । ଶେଷ ଅବଧି ସେ ଏତେ ଜୋରରେ ଘୂରିବାକୁ ଲାଗିଲେ ଯେ ସବୁ କିଛି ଗୋଟାଏ ଝାପ୍‌ସା ବୃତ୍ତ ପରି ଦିଶିଲା । ଏପରି ଭାବରେ ଘୂରି ଘୂରି ଭାଗନାର ପାହାଡ଼ ତଳକୁ ଖସି ଆସିଲେ । ତା ପରେ ମାଟିରେ ସେହିପରି କେତେ ଥର ସେ ଡ଼ିଗ୍‌ବାଜି ଖାଇ ସିଧା ହୋଇ ଛିଡ଼ା ହେଲେ ଏବଂ ସ୍ୱାଭାବିକ



Digitized by srujan ka@gmail.com

ଗତିରେ ବଣ ଆଡ଼େ ଆଗେଇଗଲେ ।

ମୋ ମଗଜରେ କିଛି ପଶିଲା ନାହିଁ । ଦେଶୀ ଲୋକେ ତ ଆହୁରି ହତଚକିତ ହେଲେ । ଆମେ ସଭିଏଁ ଭୟରେ ଥରିଲୁ । ତେବେ ମୋର ମନେ ହେଲା, ଭାଗନାରଙ୍କୁ କଦାପି ଅରକ୍ଷିତ ଅବସ୍ଥାରେ ଛାଡ଼ିଦେବା ଉଚିତ ନୁହେ । ତେଣୁ ମୁଁ ରାଇଫେଲ ନେଇ ତାହାଙ୍କ ପଛେ ପଛେ ଚାଲିଲି । ମୋ ସାଙ୍ଗରେ ଆଉ ଚାରି ଜଣ ସାହସୀ ଓ ବୁଦ୍ଧିମାନ ଲୋକ ମଧ୍ୟ ଗଲେ । ସେ ଏହା ଜାଣି ପାରିଲେ ନାହିଁ । ବଣ ଭିତରେ ହାତୀଗୁଡ଼ାକ ଗୋଟାଏ ଚୌଡ଼ା ବାଟ କରି ଦେଇଥିଲେ । ଭାଗନାର ସେହି ବାଟେ ଆଗୋଉଥିଲେ । କେବଳ ଜାଗା ଜାଗାକେ ଗଛର ଗଣ୍ଡି କି ଶୁଖିଲା ଡାଳସବୁ ପଡ଼ିଥିଲା । ଭାଗନାର ଅତି ହୁସିଆରିରେ ସେସବୁ ଡେଇଁ ଯିବାକୁ ଲମ୍ବା ପାଦ ପକାଉଥିଲେ । ଆମେ କିଛି ଦୂରରୁ ତାହାଙ୍କୁ ଅନୁସରଣ କରୁଥିଲୁ । ଶେଷରେ ସାମନାରେ ଗୋଟାଏ ଉଜ୍ଜ୍ୱଳ ଆଲୁଅ ଦିଶିଲା । ବାଟଟା ଚୌଡ଼ା ହୋଇ ଫାଙ୍କା ଜାଗା ସହିତ ମିଶିଥିଲା ।

ଭାଗନାର ବଣର ଛାଇ ଛାଡ଼ି ଖରାଟିଆ ଫାଙ୍କା ଜାଗାରେ ଯାଉଥିଲେ । ଠିକ୍ ଏତିକି ବେଳେ ଗୋଟିଏ ଅଜବ ଚାପା ଗର୍ଜନ ଶୁଭିଲା । ବିପଦ ଦେଖି ଆମେ ଗତି ବଢ଼ାଇଦେଲୁ । ଫାଙ୍କା ଜାଗାକୁ ଆସିଲା କ୍ଷଣି ଗୋଟାଏ ଅଜବ ଦୃଶ୍ୟ ଆମ ଆଖିରେ ପଡ଼ିଲା । ବଣଠୁଁ ପ୍ରାୟ ଦଶ ମିଟର ଦୂରରେ ମୋ ଡାହାଣ ପଟେ ଗୋଟିଏ ଗରିଲା ବସିଥିଲା । ଦେଖିବାକୁ ପ୍ରାୟ ଦଶ ବରଷର ପିଲାଟିଏ ପରି । ଟିକିଏ ଦୂରରେ ଗୋଟିଏ ବାଦାମୀ ରଙ୍ଗର ମାଈ ଗରିଲା ଓ ଗୋଟିଏ ଅତିକାୟ ଅଣ୍ଡିରା ଗରିଲା ବସିଥିଲେ । ଭାଗନାର ତ ଏକ ମନରେ ଚାଲୁଥିଲେ । ଅଚାନକ ଗରିଲାଗୁଡ଼ାକର ମଝିକୁ ଆସିଲା କ୍ଷଣି ସେଗୁଡ଼ାକ ଉପରେ ତାଙ୍କର ନଜର ପଡ଼ିଲା । ମଣିଷକୁ ଦେଖି ପାରି ପିଲା ଗରିଲାଟା ଚେଁ ଚେଁ ରଡ଼ି କରି ଗୋଟିଏ ଛୋଟ ଗଛ ଉପରକୁ ଚଢ଼ିଗଲା । ଅଣ୍ଡିରାଟା ଜୋରରେ ଗର୍ଜନ ଛାଡ଼ିଲା । ତଥାପି ଲୋକଟି ହଟି ନ ଯିବାର ଦେଖି, ସେ ହଠାତ୍ ଠିଆ ହୋଇଯାଇ ଲଢ଼େଇ କରିବାକୁ ତିଆର ହେଲା । ଏହି ଜାନୁଆରଟା ଗୋଟିଏ



Digitized by srujan ka@gmail.com

ବିକଟାଳ ମଣିଷ ଭଳି ଡେଙ୍ଗା, ଛାତିଟା ଦି ଗୁଣ, ଶାଳ ଗଛ ପରି ଲମ୍ବା ହାତ, କପାଳରେ ଭୃରୁ ଆଗକୁ ବାହାରିଛି, ହିଂସ୍ର ଆଖି ଓ ବଡ଼ ବଡ଼ ମୁନିଆ ଦାନ୍ତ । ସେଟା ଗୋଟାଏ ଭୀଷଣ ରଡ଼ି ଛାଡ଼ି ଡାହାଣ ହାତ ମାଟିରେ ଭରା ଦେଇ ଭାଗନାରଙ୍କ ଆଡ଼କୁ ଧାଇଁଗଲା । ଗରିଲାଟା ଗୋଟାଏ ଅଦେଖା ଧକ୍କା ଖାଇ କୁହାଟ ମାରି ମାଟିରେ ଗଡ଼ିଗଲା । କିନ୍ତୁ ଭାଗନାର ମାଟିରେ ଓଲଟି ନ ପଡ଼ି ସର୍କସର ଖେଳୁଆଡ଼ ପରି ଶୂନ୍ୟରେ ଡ଼ିଗ୍‌ବାଜି ମାରିଲେ, ଦେହଟା ସିଧା ଥାଇ ହାତ ଦୁଇଟା ଉପରକୁ ଉଠି ଯାଇଥିଲା । ଗରିଲାଟା ରାଗରେ ଉଠି ପଡ଼ି ଆଉ ଥରେ ଭାଗନାରଙ୍କ ଉପରକୁ କୁଦି ପଡ଼ିଲା । କିନ୍ତୁ ଏଥର ସେ ତାହାଙ୍କୁ ଡ଼େଇଁ ଯାଇ ମାଟିରେ ଗଡ଼ିଗଲା । ତହୁଁ ସେଟା ପ୍ରାୟ ପାଗଳ ହୋଇଗଲା । ଖୁବ୍ ଜୋରରେ ଗଁ ଗଁ ରଡ଼ି ଛାଡ଼ି ଗରିଲାଟା କଦାକାର ଲମ୍ବା ହାତରେ ଭାଗନାରଙ୍କୁ ଜାବୁଡ଼ି ଧରିବାକୁ ଚେଷ୍ଟା କଲା । କିନ୍ତୁ ଅଭଙ୍ଗା ଗୋଲକ ପରି ଗୋଟାଏ ଅଦେଖା ଶକ୍ତି ଭାଗନାରଙ୍କୁ ଆଡ଼େଇ ରଖିଲା । ଆମେ ସଭିଏଁ ଅସୀମ କୁତୂହଳରେ ଏପରି ଅସାଧାରଣ ଖେଳଟି ଦେଖିବାରେ ଲାଗିଲୁ । ଏପରିକି ଦେଶୀ ଲୋକେ ରାଇଫେଲ ତଳେ ପକାଇ ଦେଇ ଅତି ଆନନ୍ଦରେ ନାଚିବାକୁ ଲାଗିଲେ ।

ଅଣିରା ଗରିଲାର ଅସହାୟ ଅବସ୍ଥା ଦେଖି ମାଇଟା ତାହାକୁ ସାହାଯ୍ୟ କରିବାକୁ ଧାଇଁ ଆସିଲା । ଗରିଲା ଦୁଇଟା ଉତ୍ତେଜନାରେ ସେହି ଅଦୃଶ୍ୟ ଗୋଲକଟି ଉପରକୁ କୁଦି ପଡ଼ିଲେ । ଗୋଲକଟି ଠିକ୍ ଫୁଟବଲ୍ ପରି ଡ଼େଇଁବାକୁ ଲାଗିଲା । ଭାଗନାର ଦି ହାତ ଉପରକୁ ଟେକି ଶରୀରଟା ସିଧା କରି ରଖିଥିଲେ । ଗୋଲକ ଉପରେ ସେ ହାତ ଓ ଗୋଡ଼ ଭିଡ଼ି କରି ବସିଥିଲେ । ତେଣୁ ତାଙ୍କର କିଛି କ୍ଷତି ହେଉ ନ ଥିଲା । ଶକ୍ତ ପାଦରେ ଗଡ଼ା ଗୋଲକଟାକୁ ଏକା ସାଙ୍ଗରେ ଦୁଇ ଦିଗରୁ ଗରିଲା ଦୁଇଟା ଯେତେବେଳେ ଶୂନ୍ୟକୁ ପଠାଉଥିଲେ, ସେତେବେଳେ ସେଟା ପ୍ରାୟ ତିନି ମିଟର ଉପରକୁ ଉଠି ଯାଉଥିଲା ସିନା, ମାତ୍ର କଦାପି ଭାଙ୍ଗୁ ନ ଥିଲା । ତେବେ ଭାଗନାର କ୍ଳାନ୍ତ ହୋଇ ଅଚାନକ ହାତ ଗୋଡ଼ ଛାଡ଼ି ଦେଇ ଗୋଲକଟିର ତଳେ ଯାଇ ପଡ଼ିଲେ ।



Digitized by srujan ka@gmail.com

ପରିସ୍ଥିତି ଅତି ଗୁରୁତର ହେଲା । ଦର୍ଶକ ହୋଇ ରହିଲେ ଆଉ ଚଳିବ ନାହିଁ । ଲୋକମାନଙ୍କୁ ରାଇଫେଲ ଧରିବାକୁ ବଡ଼ ପାଟିରେ କହିଲି । ସଭିଏଁ ଏକାଠି ଗୋଲକ ଆଡ଼େ ଆଗେଇଲୁ । ମୁଁ ସେମାନଙ୍କୁ ହୁସିଆର କରିଦେଲି, ମୋ ବିନା ହୁକୁମରେ କେହି ଗୁଳି ଲାଛିବ ନାହିଁ । ଗୋଲକଟାର କେଉଁଠି ଗୋଟାଏ କଣା ଥିବାରୁ, ଭାଗନାର ନିଃଶ୍ୱାସ ନେଇ ପାରୁଥିଲେ ।

ବଡ଼ ଜୋରରେ ପାଟିଗୋଳ କରିବାରୁ, ଗରିଲା ଦୁଇଟାର ଦୃଷ୍ଟି ଆମ ଉପରକୁ ଟାଣି ଆଣିଲୁ । ପହିଲେ ଅଣ୍ଡିରା ଗରିଲାଟା ଭୀଷଣ ଗର୍ଜନ କରି ଆମ ଆଡ଼କୁ ଖେପି ଆସିଲା । ଗୋଲକଟି ଟିକିଏ ଦୂରକୁ ଚାଲିଯିବାରୁ ମୁଁ ଗୁଳି ଲାଛିଲି । ଗୁଳି ଯାଇ ଛାତିରେ ବାଜିବାରୁ ତା ବାଦାମୀ ରୋମରୁ ରକ୍ତର ଧାର ଛୁଟିଲା । କିନ୍ତୁ ସେ ହାତରେ କ୍ଷତ ଜାଗାଟା ଚାପି ଧରିଲା । ତା ପରେ ସେ ଅଧିକ ବେଗରେ ମୋ ଆଡ଼କୁ ମାଡ଼ି ଆସିଲା । ଦ୍ୱିତୀୟ ଗୁଳିଟା ତା କାନ୍ଧରେ ବାଜିଲା । ସେତେବେଳକୁ ସେ ମୋ ଠାକୁ ଧାଇଁ ଆସି ରାଇଫେଲର ନଳୀଟ ଜାବୁଡ଼ି ଧରିଲା, ଆଉ ଏକ ଝଟକାରେ ରାଇଫେଲଟା ମୋ ହାତରୁ ଛଡ଼ାଇ ନେଇ ଭାଙ୍ଗି ଚୁରମାର କରିଦେଲା । ତା ପରେ ସେ ହଠାତ୍ ଭୂଇଁରେ ଟଳି ପଡ଼ିଲା । ଇତି ମଧ୍ୟରେ ମାଈ ଗରିଲାଟା କୁଆଡ଼େ ପଳାଇଗଲା ।

ପର କ୍ଷଣରେ ଦେଖି ପାରିଲି, ଭାଗନାର ମୋ କତିରେ ଆସି ଠିଆ ହୋଇଛନ୍ତି । ଅଦେଖା ଗୋଲକଟି ଆଡ଼େ ମୋତେ ଅନାଇ ରହିଥିବାର ଦେଖି, ଭାଗନାର ମୁଚକି ମୁଚକି ହସି ବୁଝାଇଦେଲେ- "ମାଟି ଓଦା କି କାଦୁଅ ଥିଲେ ଗୋଲକଟା ଉପରେ ଦାଗ ପଡ଼ିଯାଏ ଏବଂ ସେଟା ଦେଖାଯାଏ । କିନ୍ତୁ ଧୂଳି ବାଲି କି ଶୁଖିଲା ପତରରେ କିଛି ହୁଏ ନାହିଁ । ହେଉ, ଚାଲ, ମୁଁ ଏହି ଉଦ୍‌ଭାବନଟା ତୁମକୁ ବୁଝାଇଦେବି ।"

ଛିଡ଼ା ହୋଇ ମୁଁ ଭାଗନାରଙ୍କୁ ନିଘେଞ୍ଚ କରି ଅନାଇଲି । ତାହାଙ୍କ ଦେହରେ ଠାଏ ଠାଏ କଳା ଦାଗସବୁ ମାଲୁମ ହେଲା । ସେ ତୁରିତେ କହି ପକାଇଲେ- "ସେସବୁ କିଛି ନୁହେଁ, ଆପେ ଆପେ ଭଲ



Digitized by srujan ka@gmail.com

ହୋଇଯିବ । ମୋର ବି ଯଥେଷ୍ଟ ଶିକ୍ଷା ହେଲା । ଏବେ ଶୁଣ ଅସଲ କଥାଟା । ଆମେରିକାବାସୀମାନେ କାଚ ଭଳି ଗୋଟାଏ ସଫା ଧାତୁ ଉଦ୍‌ଭାବନ କରିଛନ୍ତି । ସେଟା ଧାତୁ ପରି ଟାଣ । ସେମାନେ ସେଥିରେ ଉଡ଼ାଜାହାଜ ତିଆରି କରିଛନ୍ତି । ଶତ୍ରୁ ପକ୍ଷରେ ତାହା ପ୍ରାୟ ଅଦୃଶ୍ୟ । ତଥାପି ଚାଳକ ସେଥିରେ ଦେଖି ପାରିବ, ଠିକ୍ ଯେମିତି ଗୋଲକ ଭିତରେ ଥିଲେ ସୁଦ୍ଧା ମୁଁ ଦେଖୁଛି । ମୁଁ ବି ଅନେକ୍ ଦିନରୁ ଭାବୁଛି, ଏପରି ଗୋଟାଏ ଦୁର୍ଗ ତିଆରି କରିବି, ଯାହା ଭିତରୁ ମୁଁ ସବୁ କିଛି ଦେଖି ପାରିବି । କୌଣସି ଜାନୁଆର ମୋତେ ଆକ୍ରମଣ କଲେ, ସେହି ଦୁର୍ଗ ମୋତେ ନିଶ୍ଚୟ ରକ୍ଷା କରିବ । ମୁଁ ବି ବହୁ ପରୀକ୍ଷା ପରେ ସଫଳ ହୋଇଛି, ରବରରୁ ଏହି ଗୋଲକଟି ତିଆରି କରିଛି । ରବରକୁ କାଚ ପରି ସଫା ଓ ଲୁହା ପରି ଟାଣ କରି ପାରିଛି । ଆଜି ମୋ ଅଭିଯାନଟା ଅବଶ୍ୟ ଅତିଶୟ ପ୍ରୀତିକର ହୋଇ ନାହିଁ । ତୁମେମାନେ ଯଥା ସମୟରେ ଆସି ମୋତେ ସାହାଯ୍ୟ କରି ନ ଥିଲେ ପରିଣାମ ଅଧିକ ଶୋଚନୀୟ ହୋଇ ଥାଆନ୍ତା । କିଏ ଭାବିଥିଲା ଯେ ଏଠାରେ ଗରିଲା ଥିବେ ? କାରଣ ସେମାନେ ଗଭୀର ଜଙ୍ଗଲରେ ରହନ୍ତି ।''

''କିନ୍ତୁ ଏହି ଗୋଲକ ଭିତରେ ଆପଣ କିପରି ଚାଲନ୍ତି ?''

''ନିହାତି ସହଜ । ଗୋଲକର କାନ୍ଥରେ ଗୋଟାଏ ପାଦରେ ଚାପ ଦିଏ । ଫଳରେ ଗୋଲକଟା ସାମନାରେ ଗଡ଼ି ଯାଏ । ତା କାନ୍ଥ ଦେହରେ ନିଃଶ୍ୱାସ ନେବା ପାଇଁ କଣା ଅଛି । ଗୋଲକଟା ଦୁଇ ଖଣ୍ଡ ଅଧା-ଗୋଲକରେ ତିଆରି । ଭିତରକୁ ପଶିଯାଇ ସଫା ରବରର ଗୋଟିଏ ବିଶେଷ ଛିଟିକିଣି ଦ୍ୱାରା ତା ମୁହଁ ବନ୍ଦ କରି ଦେଇଛି । ତେବେ ଅସୁବିଧାଟା ହେଲା, ଢାଲୁ ଜମିରେ ଗୋଲକଟିକୁ ଅଟକାଇ ରଖିବା ବଡ଼ କଠିନ । ଏତେ ଜୋରରେ ତାହା ଗଡ଼ିଯାଏ ଯେ ମୋତେ ବ୍ୟାୟାମ କରିବାକୁ ପଡ଼େ ।''





Digitized by srujan ka@gmail.com

## ସାତ

**୨୦ ଜୁଲାଇ :**

ହାତୀ ପଲଟା ଦୂରକୁ ଚାଲି ଯାଇଥିବାର ଜଣା ପଡ଼ିଲା । ଛାଉଣି ପକାଇ ହାତୀଙ୍କ ଯାତାୟତରେ ପଥ ଧରି କେତେ ଦିନ ଆଗେଇ ଗଲାରୁ କିଛି ତାଜା ଚିହ୍ନ ଆମ ନଜରକୁ ଆସିଲା । ଦି ଦିନ ପରେ ଦେଶୀ ଲୋକେ ହାତୀର ଜଳପାନର ଜାଗାଟା ଠଉରାଇଲେ । ସେମାନେ ନାନା କୌଶଳରେ ହାତୀ ଧରନ୍ତି । କିନ୍ତୁ ଭାଗନାର ନିଜର ମୌଳିକ ଉପାୟଟା ପସନ୍ଦ କରନ୍ତି । ସେ ସାଙ୍ଗରେ ଗୋଟିଏ ବାକ୍ସ ଆଣିବାକୁ ହୁକୁମ୍ ଦେଇଥିଲେ । ସେ ସେଥିରୁ କେତେଗୁଡ଼ିଏ ଅଦେଖା ଦରବ କାଢ଼ିଲେ । ହାଉଆରେ ଉଡ଼ିଗଲା ଭଳି ଏହିସବୁ ଦରବ ସେ ସଜାଇ ରଖିଲେ । ସେତିକି ବେଳେ ଭାଗନାରଙ୍କ ହାତର ଗତିବିଧିରୁ ମାଲୁମ ହେଉଥିଲା, ହୁଏତ ସେ ଜଣେ ପକ୍କା ଗୁଣିଆ ।

ଭାଗନାର ମୋତେ କିଛି କହି ନ ଥିଲେ । କିନ୍ତୁ ମୁଁ ଅନୁମାନ କଲି, ସେ ହୁଏତ ହାତୀ ଧରିବା ଲାଗି କିଛି ଫାନ୍ଦ ବାହାର କରିଛନ୍ତି । ଗୋଲକଟି ଭଳି ଏଗୁଡ଼ିକ ବି ସେହି ଏକା ଅଦେଖା ଦରବରେ ତିଆରି ହୋଇଥିବ ।



Digitized by srujan ka@gmail.com

ମୋର କୁତୂହଳ ବୁଝି ପାରି ଭାଗନାର ମୋତେ କହିଲେ- "ଆସ, ଟିକିଏ ପରଖି ଦେଖିବ।"

ଶୂନ୍ୟରେ ଅଣ୍ଡାଳି ଅଣ୍ଡାଳି ଶେଷକୁ ଏକ ସେଣ୍ଟିମିଟର ଲମ୍ବା ଖଣ୍ଡିଏ ଦଉଡ଼ି ମୋ ହାତରେ ବାଜିଲା। ପଚାରିଲି- "ଏଟା କଅଣ ରବର ?"

ସେ ଜବାବ ଦେଲେ- "ହଁ, ରବରରେ ନାନା ରକମ ଉପାୟରେ ତିଆରି ହୋଇଛି। ଏହି ବିଶେଷ କାମ ଲାଗି ଏଟାକୁ ମୁଁ ଦଉଡ଼ି ଭଳି ନରମ କରିଛି, କିନ୍ତୁ ଏଟା ସେହି ଗୋଲକଟି ପରି ସଫା ଓ ଲୁହା ପରି କଠିନ। ଏହି ଅଦେଖା ଦଉଡ଼ିରେ ଫାସ ତିଆରି କରି ହାତୀର ବାଟରେ ପାତି ରଖିବି। ଏହି ଫାସରେ ଛନ୍ଦି ହୋଇ-ହାତୀ ଆପେ ଆପେ ଆସି ଆମ ହାତରେ ଧରା ପଡ଼ିବ।"

ମାଟି ଉପରେ ଏହି ଅଦେଖା ଦଉଡ଼ି ବିଛାଇ ଫାନ୍ଦ ପାତିବା ଗୋଟାଏ ଅତି ସହଜ କାମ ନ ଥିଲା। ଆମେ ନିଜେ ବାରମ୍ବାର ଗୋଡ଼ ବାଜି ଓଲଟି ପଡୁଥିଲୁ। ଯାହା ହେଉ, ସଞ୍ଜ ସୁଦ୍ଧା କାମଟା ସରିଲା। ଏଣିକି ହାତୀକୁ ଅପେକ୍ଷା କରିବା ଛଡ଼ା ଆମର ଆଉ କିଛି ଉପାୟ ନ ଥିଲା।

ଗ୍ରୀଷ୍ମ ମଣ୍ଡଳରେ ରାତି ଅତି ଚମତ୍କାର। ବଣ ସାରା ଖାଲି ମୃଦୁ ସାଏଁ ସାଏଁ ଶବ୍ଦ। ଥରେ ଗୋଟାଏ କାନ୍ଦଣା ପରି ଆବାଜ ଶୁଭିଲା। ହୁଏତ କୌଣସି ଗୋଟାଏ ଛୋଟ ଜାନୁଆର ଜୀବନରୁ ଶେଷ ବିଦାୟ ନେଲା। ବେଳେ ବେଳେ ଉଚ୍ଛୁଳା ହସର ଆବାଜ ମଧ ଶୁଭୁଥିଲା। ତାହା ଶୁଣି ଦେଶୀ ଲୋକେ ଆହୁରି ଜାକିଜୁକି ହୋଇ ବସିଲେ, ହେମାଳ ହାଉଆ ଦେହରେ ବାଜିଲେ ଲୋକେ ଠିକ୍ ଯେମିତି ଲାଗିଲାଗି ବସନ୍ତି।

ହାତୀସବୁ ଅଲକ୍ଷ୍ୟରେ ଆସିଲେ। ପଲ ଛାଡ଼ି ଟିକିଏ ଆଗେ ଆଗେ ଦଳପତି ହାତୀଟା ଚାଲିଥିଲା। ତା ଶରୀର ପ୍ରକାଣ୍ଡ, ଶୁଣ୍ଢଟା ବଢ଼ାଇ ବରାବର ହଜାରେ ରକମର ଗନ୍ଧ ବାରୁଥିଲା ଏବଂ କେଉଁଟା



Digitized by srujan ka@gmail.com

ବିପଦଜନକ ମନେ ମନେ ହିସାବ କରୁଥିଲା । ହାତୀଟା ଠିକ୍ ଆମ ଅଦେଖା ଫାସଗୁଡ଼ାକ ସାମନାରେ ହଠାତ୍ ଅଟକିଗଲା, ଆଉ ଶୁଣ୍ଢଟା ସିଧା ସଳଖ ସାମନାକୁ ବଢ଼ାଇଦେଲା । ହୁଏତ ଆମ ଦେହର ଗନ୍ଧ ଠଉରାଇବାକୁ ସେ ଚେଷ୍ଟା କରୁଥିଲା । ଆଗରୁ ଦେଶୀ ଲୋକଙ୍କ ଉପଦେଶ ଅନୁସାରେ ଆମେ ସଞ୍ଜ ହେବା ଆଗରୁ ଗାଧୋଇ ସାରି ଜାମାପଟା କାଚି ଦେଇଥିଲୁ । କାରଣ ଏହି ନିରକ୍ଷୀୟ ମୁଲକରେ ଦିନ ସାରା ଲୋକଙ୍କ ଦେହରୁ ଝାଳ ବହେ ।

ଭାଗନାର ଫୁସ୍‌ଫୁସ୍ କରି କହିଲେ- "କପାଳ ଖରାପ । ହୁଏତ ହାତୀଟା ଆମ ଗନ୍ଧ ବାରି ପାରିଛି । କିନ୍ତୁ ମୋର ଧାରଣା, ଗନ୍ଧଟା ରବରର, ଆମ ଦେହର ନୁହେଁ ।"

ହାତୀଟା ଇତସ୍ତତ କରୁଥିଲା । ସେଟା ଗୋଟାଏ ଅଜଣା ଗନ୍ଧ ବାରି ପାରିଥିବାର ମାଲୁମ ହେଲା । ହାତୀଟା ଥତମତ ହୋଇ କେତେ ପାଦ ଆଗେଇଲା, ଆଉ ତା ଘରେ ପହିଲି ଫାସଟାରେ ସେଟା ଅଟକିଗଲା । ସେ ଆଗ ଗୋଡ଼ରେ ଝିଙ୍କିଲା, କିନ୍ତୁ ଅଦେଖା ବନ୍ଧନ ଖସିଲା ନାହିଁ । ହାତୀ ଆହୁରି ଜୋରରେ ଓଟାରିଲା । ତା ପରେ ପ୍ରକାଣ୍ଡ ଦେହରେ ପୂରା ଭରା ଦେଇ ହାତୀଟା ଏପରି ଭାବରେ ପଛକୁ ଟାଣିଲା ଯେ ଦଉଡ଼ିର ବନ୍ଧନ ହାତୀର ମୋଟା ଚମଡ଼ା ଭେଦି କଟିଗଲାରୁ ଗୋଡ଼ରୁ ଥୋପା ଥୋପା ବହଳ ରକତ ଝରିଲା । କିଛି ସମୟ ପରେ ଯେଉଁ ମୋଟା ଗଛର ଗଣ୍ଡିରେ ଦଉଡ଼ିଟା ବନ୍ଧା ହୋଇଥିଲା, ସେଟା ହଠାତ୍ ଭାଙ୍ଗି ପଡ଼ିଲା । ତା ପରେ ହାତୀଟା ତଳେ ପଡ଼ିଗଲା ଏବଂ ତୁରିତେ ହୁଡ଼ମୁଡ଼କି ଠିଆ ହୋଇ ପଛକୁ ବୁଲି ଯାଇ ବିପଦର ହୁଙ୍କାର ଛାଡ଼ି ପଳାଇଲା ।

ତହୁଁ ଭାଗନାର କହି ପକାଇଲେ- "ସବୁ ମାଟି ହେଲା । ଯେଉଁଠି ସେହି ଅଦେଖା ଫାନ୍ଦଗୁଡ଼ାକ ପାତିଥିଲି, ହାତୀଗୁଡ଼ାକ ଆଉ ତା ପାଖ ମାଡ଼ିବେ ନାହିଁ । ସେମାନେ ଗନ୍ଧ ଶୁଙ୍ଘି ତାହା ବାରିନେବେ । ତେଣୁ ଦେଖୁଛି, ଗୋଟାଏ କିଛି ଗନ୍ଧନାଶକ ରାସାୟନିକ ଦରବ ବ୍ୟବହାର



Digitized by srujan ka@gmail.com

କରବାକୁ ହେବ । ହାତୀକୁ ଜୀବନରୁ ନ ମାରି ଖାଲି ଅଚେତ କରିବାକୁ ପଡ଼ିବ । ଗେସ୍-ମୁଖା ପିନ୍ଧି ଗୋଟାଏ ଡ୍ରାମ ଗେସ୍-ଆଣି ଏହି ବଣର ପଥରେ ଛାଡ଼ିବି । ଚଉଦିଗରେ ଗଛଲତା ଭାରି ବହଳ । ତେଣୁ ତା ଭିତରେ ଗେସ୍ ଠିକ୍ ଭାବରେ ରହିପାରିବ । କିନ୍ତୁ ଆଉ ଗୋଟାଏ ସହଜ ପଥ ତ ରହିଛି ।''

ହଠାତ୍ ହସି ହସି ସେ ପୁଣି କହିଲେ- ''ହାତୀଗୁଡ଼ାକ କେଉଁ ଜାଗାକୁ ପାଣି ପିଇବାକୁ ଯାଆନ୍ତି, ଆମକୁ ଏକ୍ଷଣି ଖାଲି ସେହି ଜାଗାଟା ବାହାର କରିବାକୁ ପଡ଼ିବ । ସେମାନେ ଏ ଜାଗାକୁ ଆଉ ଆସିବେ ନାହିଁ ।''





Digitized by srujan ka@gmail.com

ଆଠ

**୨୧ ଜୁଲାଇ :**

ଦେଶୀ ଲୋକେ ଆଉ ଗୋଟାଏ ଜଳ-ପାନର ଜାଗା ପାଇଲେ– ଛୋଟ ବଣୁଆ ହ୍ରଦ ପରି । ହାତୀଗୁଡ଼ାକ ପାଣି ପିଇ ଚାଲିଗଲା ପରେ ଆମେ ଲୋକଙ୍କୁ ନେଇ କାମ ଆରମ୍ଭ କରିଦେଲୁ । ଆମେ ଜାମାପଟା ଖୋଲି ପାଣିରେ ପଶି ଲାଗି ଲାଗି ଧାଡ଼ିଏ ଖୁଣ୍ଟି ପୋତି ହ୍ରଦର ଗୋଟିଏ ଜାଗା ଘେରି ଦେଲୁ । ତା ପରେ ପାଣି ତଳେ ଏହି ଖୁଣ୍ଟିଗୁଡ଼ିକ ଦେହରେ ବହଳିଆ ମାଟି ଲିପା ହେଲା । ଫଳରେ ସେଟା ଗୋଟାଏ ଅଲଗା ପୋଖରୀ ଭଳି ଦିଶିଲା ।

ଭାଗନାର କହିଲେ– ‘‘ଭାରି ଚମତ୍କାର ହେଲା । ଏବେ ଏହି ପାଣିକି ବିଷାକ୍ତ କରିବାକୁ ହେବ ।’’

ତା ପରେ ସେ ତମ୍ବୁରୁ ପୂରା ବାଲତିଏ ‘ହସ୍ତୀ ସୁରା’ ନାମକ ତରଳ ଦରବ ନେଇ ଆସି ସେହି ପୋଖରୀରେ ଢ଼ାଳି ଦେଲେ । ଆମେ ସଭିଏଁ ଗଛକୁ ଚଢ଼ିଯାଇ ବସି ରହି ତାହାଙ୍କ କାଣ୍ଡ କାରଖାନା ଦେଖିଲୁ ।

ମୁଁ ପଚାରିଲି- ‘‘ହାତୀ କଅଣ ଆପଣଙ୍କର ଏହି ସୁରା ପାଣି ପିଇବ ?’’



Digitized by srujan ka@gmail.com

ଭାଗନାର ଜବାବ ଦେଲେ- "ହାତୀ ସେଟା ଖାଇବାକୁ ଭଲ ପାଇବ ବୋଲି ତ ମୋର ଆଶା।"

ବଣର ବିଚିତ୍ର ରୂପ ଦେଖି ମୁଁ ଅବାକ ହୋଇଗଲି। ବଣରୁ ଗୋଟିଏ ଗୋଟିଏ ଜାଗା ଠିକ୍ ତେତାଲା କୋଠା ପରି ଦିଶୁଥିଲା। ଛୋଟ ଛୋଟ ବଣବୁଦା ଉପରକୁ ଆଉ ଗୋଟାଏ ଥାକ ବଣରେ ଧାଡ଼ି ଧାଡ଼ି ଲମ୍ବା ଲମ୍ବା ଗଛ, ଆହୁରି ଉଚକୁ ପ୍ରଥମ ଧାଡ଼ିର ଗଛର ଅଗରୁ ଦ୍ୱିତୀୟ ଧାଡ଼ିର ଗଛର ଅଗ ଯାଏ ନାନା ଧରଣର ଲତା ପତରର ଜଟିଳ ଜାଲ। ଏହି ଧରଣର ତେତାଲା ଅରଣ୍ୟର ଦୃଶ୍ୟ ବାସ୍ତବିକ ଅତିଶୟ ରମଣୀୟ। ମଥା ଉପରକୁ ସବୁଜ ଗୁହା, ପାହାଚ ପାହାଚ ହୋଇ ଉପୁଚି ପଡୁଥିବା ସବୁଜ ପ୍ରପାତ, ଫିକା ନୀଳ ପାହାଡ଼ ଆକାଶକୁ ଉଠି ଯାଇଛି, ଆଉ ସବୁଠି ପକ୍ଷୀଗୁଡ଼ିକର ରଙ୍ଗୀନ ପରରେ ଓ ଜଙ୍ଗଲୀ ଫୁଲର ସୁଷମାରେ ଚିତ୍ରିତ ହୋଇଛି। ତା ପରେ ଏକ ବିଶାଳ ମନ୍ଦିର ଭଳି ବଡ଼ ବଡ଼ ଗଛର ଡାଳରୁ ଓହଳସବୁ ମାଟି ଉପରକୁ ନଇଁ ଆସିଛି। ସେଠାରେ ଝାପ୍‌ସା ଅନ୍ଧାର, ଶୀତଳ ହାଉଆ। ଏହିସବୁ ଅତିକାୟ ବର, ରବର ଓ ଡିମିରି ଗଛ ତଳେ ଆମେ ବିଶ୍ରାମ ନେଉଥିଲୁ। ଏଠାରୁ ତୃଣଭୂମି ଖୁବ୍ ବେଶି ଦୂର ନୁହେଁ। ତେଣୁ ପ୍ରାୟ ତୃଣଭୋଜୀ ଜାନୁଆରସବୁ ଏଠାକୁ ପାଣି ପିଇବାକୁ ଆସନ୍ତି।

ଦଳେ ବଣୁଆ ଘୁଷୁରି ପିଲାଛୁଆ ଧରି ପାଣି ପିଇବାକୁ ଆସିଲେ। ପାଣି ପିଇ ସାରି ପିଲାଗୁଡ଼ାକ ଚେଁ ଚେଁ କରି ଗୋଟାକ ଉପରେ ଗୋଟାଏ ପଡ଼ି ଧାଇଁଲେ। ଛଅଟା ଯାକ ମାଈ ଘୁଷୁରି ମାତାଲ ହୋଇଗଲେ। ସେଗୁଡ଼ାକ କୁଦାକୁଦି କଲେ, ପଛ ଗୋଡ଼ରେ ଭରା ଦେଇ ଛିଡ଼ା ହେଲେ, ମାଟିରେ ଗଡ଼ିଲେ, ଡ଼ିଗ୍‌ବାଜି ଖାଇଲେ, ଆଉ ତା ପରେ ଟଳି ଟଳି ପିଲାଗୁଡ଼ାକ ସହିତ ତଳେ ଶୋଇ ପଡ଼ିଲେ। କିନ୍ତୁ ଅଣ୍ଡିରା ଘୁଷୁରିଟା ନିଶାରେ ରାଗିଗଲା, ଘୋଁ ଘୋଁ ଶବ୍ଦ କରି ଗୋଟିଏ ଗଛ ପାଖକୁ ଧାଇଁ ଯାଇ ଖୁବ୍ ଜୋରରେ ଗଣ୍ଡିରେ ଦାନ୍ତ ବସାଇଦେଲା।



Digitized by srujan ka@gmail.com

ମାତାଲ ଘୁଷୁରିଗୁଡ଼ାକର କାଣ୍ଡକାରଖାନାରେ ଆମେ ଏପରି ମଜି ଯାଇଥିଲୁ ଯେ ଆମେ ହାତୀଗୁଡ଼ାକର ଆଗମନ ଖିଆଲ କରି ପାରିଲୁ ନାହିଁ। ସବୁଜ ପଥଟା ଧରି ହାତୀସବୁ ପଲ ପଲ ହୋଇ ଧୀରେ ଧୀରେ ଆଗେଇ ଆସିଲେ। ଏକାଠି ଏତେଗୁଡ଼ାଏ ହାତୀ ଦେଖି ସତରେ ଆମକୁ ଭାରି ଡର ମାଡ଼ିଲା। ପ୍ରାୟ କୋଡ଼ିଏଟିରୁ ବେଶି ହେବ।

ଏଣେ ମାତାଲ ଘୁଷୁରିଟା ଭୀଷଣ ଗର୍ଜନ ଛାଡ଼ି ହାତୀ ପଲ ଆଡ଼େ ଧାଇଁଲା। ଦଳପତି ହାତୀଟି ହଡ଼ବଡ଼େଇଗଲା। ଘୁଷୁରିଟା ତା ପାଦରେ ଦାନ୍ତ ବସାଇଦେଲାରୁ ହାତୀ ଶୁଣ୍ଢ ନୁଆଁଇ ଆଣି ଦାନ୍ତରେ ଘୁଷୁରିଟାକୁ ଏତେ ଜୋରରେ ଫିଙ୍ଗି ଦେଲା ଯେ ସେଟା ଯାଇ ପୋଖରୀ ଭିତରେ ପଡ଼ିଲା। କିଛି ସମୟ ପରେ ଟିକିଏ ସାହସ ଧରି ଢୋକେ



ପାଣି ପିଇ ଘୁଷୁରିଟା ପୁଣି ହାତୀ ପାଖକୁ ଧାଇଁ ଆସିଲା। ହାତୀଟି ତା ଉପରେ ଗୋଟାଏ ଗୋଡ଼ ଚାପିଦେବାରୁ, ଘୁଷୁରିଟାର ଦେହ ଚକିତେ ଚୁଡ଼ା ପରି ଚେପଟା ହୋଇଗଲା।

ଦଳପତି ହାତୀଟି ଧୀର ପାଦରେ ଦଳ ପାଖକୁ ଆଗେଇଗଲା। ମାଇ ଓ ପିଲା ହାତୀଗୁଡ଼ାକ ସେତେ ବେଳେ ନିଘୋଡ଼ ନିଦରେ ଶୋଇ ପଡ଼ିଥିଲେ। ତହୁଁ ସେ ଅତି ସାବଧାନରେ ସେମାନଙ୍କ ପାଖ ଦେଇ ହ୍ରଦ କୂଳରେ ଯାଇ ପାଣିକି ଶୁଣ୍ଢ ବଢ଼ାଇଲା। ଏଠି ସେଠି ସେ ପାଣି ଶୁଙ୍ଘିଲା। ଶେଷରେ ସେ ପ୍ରଥମ ଜାଗାକୁ ଫେରିଯାଇ 'ହସ୍ତୀ ସୁରା'



Digitized by srujan ka@gmail.com

ପିଇବାକୁ ଲାଗିଲା । ତା ପଛେ ପଛେ ସମୁଦାୟ ପଲଟା ଆସି ସେଠି ଜୁଟିଲା । ପାଣି ପିଇ ଦଳପତିର ପେଟଟା ଢ଼ୋଲ ପରି ଫୁଲିଗଲା । ଘଣ୍ଟାକ ଭିତରେ ପଲଟା ଯାକ ପୋଖରୀର ପାଣି ପ୍ରାୟ ଶୁଖାଇ ଦେଲେ । ଦଳପତି ହାତୀଟା ଘେଁ। ଘେଁ। ଶବ୍ଦ କରି ପାଣିରୁ ଉଠି ଆସିଲା, ତାଳେ ତାଳେ ଦେହର ଆଗ ପଛ ଦୋହଲାଇଲା । ତା ଚାରି ପଟେ 'ହସ୍ତୀ ସୁରା' ପିଇଥିବା ସାଥୀଗୁଡ଼ାକ ଟଳି ପଡୁଥିଲେ । ଗୋଟିଏ ମାଈ ହାତୀ ଦଳପତି ପାଖକୁ ଆସି ତା ମଥାରେ ଶୁଣ୍ଢ ବୁଲାଇ ସମବେଦନା ଜଣାଇଲା । ତହୁଁ ସେ ଧୀରେ ଧୀରେ ଲାଞ୍ଜ ହଲାଇ ଜବାବ ଦେଲା । ତା ପରେ ହଠାତ୍ ମଥା ଟେକି ଖୁବ୍ ଜୋରରେ ନାକ ଡାକି ସେ ଧଡ଼ାସ କରି ତଳେ ପଡ଼ିଗଲା । ଅନ୍ୟ ହାତୀସବୁ ବିଚଳିତ ହୋଇ ତାହାଙ୍କୁ ଘେରିଗଲେ । ଦଳପତିକୁ ଛାଡ଼ିଦେଇ ଚାଲିଯିବାକୁ ସେମାନଙ୍କର ସାହସ କୁଳାଇଲା ନାହିଁ ।

ତା ପରେ ହାତୀସବୁ ଗୋଟାଏ ବୈଠକ ବସାଇଲେ, ଅଜବ ଶବଦ କଲେ ଏବଂ ବରାବର ଶୁଣ୍ଢ ହଲାଇବାକୁ ଲାଗିଲେ । କିଛି ସମୟ ପରେ ସେମାନେ ଜଣେ ନୂଆ ଦଳପତି ବାଛିଲେ ଏବଂ ଜଣକ ପରେ ଜଣେ ଦଳ ବାନ୍ଧି ଚାଲିଗଲେ ।

ସେତିକି ବେଳେ ଦିଗ୍‌ବଳୟରେ ଅସ୍ତଗାମୀ ରବିଙ୍କ କିରଣରେ ଆକାଶ ନାଲି ପଡ଼ି ଯାଇଥିଲା ।





Digitized by srujan ka@gmail.com

## ନଅ

ଆମେ ଗଛରୁ ଓହ୍ଲାଇ ଆସି ଶଙ୍କିତ ଚିତ୍ତରେ ଅନାଇଲୁ, ମଇଦାନଟା ରଣଭୂମି ପରି ଦିଶୁଛି । ପ୍ରକାଣ୍ଡ ହାତୀଗୁଡ଼ାକ ଗୋଡ଼ ମେଲାଇ ପଡ଼ିଛନ୍ତି, ମଝିରେ ମଝିରେ ବଣୁଆ ଘୁଷୁରିସବୁ ଶୋଇଛନ୍ତି ।

ଭାଗନାର ସେଥିକି ଭ୍ରୁକ୍ଷେପ ନ କରି ନିଜ କାମରେ ଲାଗି ପଡ଼ିଲେ । ଏଣେ ଦେଶୀ ଲୋକେ ଘୁମନ୍ତ ଘୁଷୁରିଗୁଡ଼ାକୁ ଜବାଇ କରିବାକୁ ଲାଗିଲେ ।

ଆଗରୁ ସବୁ କିଛି ତିଆରି ହୋଇ ରହିଥିଲା । ଭାଗନାର ଏକ ଧରଣର ଡାକ୍ତରୀ ଯନ୍ତ୍ରପାତି ସାଙ୍ଗରେ ନେଇ ଆସିଥିଲେ । ଗୋଟିଏ ବାକ୍ସରୁ ଖଣ୍ଡିଏ ବୀଜାଣୁ-ମୁକ୍ତ ଛୁରୀ କାଢ଼ି ହାତୀର ମଥାରେ ଗଳାଇଦେଲେ । ତା ପରେ ଚମଡ଼ା ଉଠାଇ ଭିତରର ଖପୁରୀରେ କରତ ଚଳାଇବାକୁ ଲାଗିଲେ । ହାତୀର ଶୁଣ୍ଢଟା ଥରେ ଦି ଥର ଥରିଲା । କିଛି ସମୟ ପରେ ସେ କରୋଟିର ଗୋଟିଏ ଅଂଶ ଟାଣି ଆଣିଲେ । ତା ମଥାରୁ ମଗଜଟାକୁ ସେ ତୁରିତେ ବାହାର କରିଦେଲେ । ଏତିକି ବେଳେ ମଗଜହୀନ ହାତୀଟା ତାହାର ପ୍ରକାଣ୍ଡ ଦେହଟା ଟିକିଏ ହଲାଇଲା ଏବଂ ତା ପରେ ଉଠି ପଡ଼ି ଠିଆ ହୋଇ କେତେ ପାଦ ଚାଲିଗଲା ।



Digitized by srujan ka@gmail.com

ଆଖି ଖୋଲା ଥିଲେ ସୁଦ୍ଧା ହାତୀଟା ପରିଷ୍କାର କିଛି ଦେଖି ପାରୁ ନ ଥିଲା । ବାଟରେ ଶୋଇଥିବା ତା ସାଥୀଟିକୁ ହାବୁଡ଼ି ସେ ମାଟିରେ କଚାଡ଼ି ହୋଇ ପଡ଼ିଲା, ଆଉ ଶୁଣ୍ଢ ଓ ଗୋଡ଼ ହଲାଇଲା ।

କିଛି ସମୟ ପରେ ହାତୀର ହଲଚଲ ବନ୍ଦ ହେବାରୁ, ଭାଗନାର ପୁଣି ଅପରେସନରେ ଲାଗିଗଲେ । ମୋତେ ଠାରି ଦେବାରୁ, ମୁଁ ସାବଧାନରେ ହାତ ଧୋଇ ସାଙ୍ଗରେ ଆଣିଥିବା ହାତୀର ମଥାର ଖପୁରୀଟାରୁ ବୈଜ୍ଞାନିକ ରିଙ୍ଗଙ୍କ ମଗଜଟି କାଢ଼ି ଆଣି ଭାଗନାରଙ୍କ ହାତକୁ ବଢ଼ାଇଦେଲି । ସେ ଖପୁରୀ ଭିତରେ ମଗଜଟା ବସାଇଦେଲେ ।

ଅତି ସାବଧାନରେ ଦ୍ରୁତ ଗତିରେ ଭାଗନାର କାମ କରି ଚାଲିଲେ । ସେ ଗୋଟିଏ ଗୋଟିଏ ଶିରାର ଅଗସବୁ ସିଲେଇ କରୁଥିଲେ ଏବଂ ରିଙ୍ଗଙ୍କ ମଗଜ ସହିତ ହାତୀର ଦେହର ଯୋଗାଯୋଗ ଘଟାଉଥିଲେ । ଶେଷରେ ମଗଜ ଉପରେ ଖପୁରୀ ଚାପା ଦିଆ ହେଲା । ସେ ଧାତୁର କ୍ଲିପ ଦ୍ୱାରା ସେହି ଖପୁରୀକୁ ଅଟକାଇ ଦେଲେ ଏବଂ ଫେର୍ ଯଥା ସ୍ଥାନରେ ଚମଡ଼ା ପକାଇ ସିଲେଇ କରିଦେଲେ । ଏବେ ତ ଏଟା ହାତୀ ନୁହେଁ ରିଙ୍ଗ, ଅବା ରିଙ୍ଗ ହେଲେ ହାତୀ । ମୁଁ ମଥା ଭିତରେ ମଣିଷର ମଗଜ ଥିବା ହାତୀଟିର ପାଖକୁ ଆଗେଇଗଲି । ଦେଖିଲି, ଆଖି ଦୁଇଟା ଠିକ୍ ଆଗ ଭଳି ପ୍ରାଣହୀନ ମାଲୁମ ହେଲା । ପଚାରିଲି– "ଏହାର କାରଣ କ'ଣ ?"

ଭାଗନାର ଜବାବ ଦେଲେ- "ଏଟା ବଡ଼ ସହଜ କଥା । ମଗଜର ଶିରାଗୁଡ଼ାକ ସିଲେଇ ହୋଇଛି ସିନା, କିନ୍ତୁ ଏଯାଏ ସେସବୁ ଯୋଡ଼ି ଯାଇ ନାହିଁ । ମୁଁ ରିଙ୍ଗଙ୍କୁ ହୁସିଆର କରି ଦେଇଛି, ଶିରାଗୁଡ଼ିକ ଯୋଡ଼ି ନ ଯିବା ଯାଏ ସେ ଆଦୌ ହଲାହଲି କରିବେ ନାହିଁ ।"

ରବି ଦିଗ୍‌ବଳୟରେ ବୁଡ଼ିଗଲେ । ହ୍ରଦ କୂଳରେ ବସି ଦେଶୀ ଲୋକେ ବଣୁଆ ଘୁଷୁରିର ମାଂସ ନିଆଁରେ ପୋଡ଼ି ହରଷରେ ଖାଉଥିଲେ । ହଠାତ୍ ମାତାଲ ହାତୀଗୁଡ଼ାକର ଗର୍ଜନ ଶୁଭିଲା । ତାହା ଶୁଣିଲା କ୍ଷଣି ସଭିଏଁ ଧଡ଼ପଡ଼ ଉଠି ଠିଆ ହେଲେ । ଭାଗନାର ଓ ମୁଁ



Digitized by srujan ka@gmail.com

ଧାଇଁ ଯାଇଁ ବୁଦା ଭିତରେ ଲୁଚିଗଲୁ । ଦେଶୀ ଲୋକେ ବି ଆମ ପଛେ ପଛେ ଆସିଲେ । ସେତିକି ବେଳେ ହାତୀଗୁଡ଼ାକ ଚଳି ଚଳି ଦଳପତି ହାତୀ ପାଖରେ ଯାଇ ଛିଡ଼ା ହେଲେ । ସେହି ହାତୀଟି ଅପରେସନ ପରେ ଶୋଇ ପଡ଼ିଥିଲା । ସେମାନେ ଶୁଣ୍ଢରେ ତାହାକୁ ପରଖିଲେ, ଶୁଙ୍ଘିଲେ, ନିଜ ଭାଷାରେ ଆଳାପ କଲେ ଏବଂ ଶେଷରେ ଚାଲିଗଲେ । ଆମେ ବି ରୋଗୀ ଠାକୁ ଫେରି ଆସିଲୁ ।

ଭାଗନାର ହାତୀକୁ କହିଲେ- "ତୁନି ରହିଥିବେ, କିଛି ଜବାବ ଦେବେ ନାହିଁ । ମୋ କଥା ବୁଝି ପାରୁଥିଲେ ଦି ଥର ଆଖି ମିଟିମିଟି କରନ୍ତୁ ।"

ହାତୀଟି ତୁରିତେ ଆଖି ମିଟିମିଟି କଲା ।

ଭାଗନାର ପୁଣି ବୁଝାଇଦେଲେ- "ବେଶ୍ ! ଆଜି ଆପଣଙ୍କୁ ଚୁପ୍‌ଚାପ୍ ଶୋଇ ରହିବାକୁ ହେବ । ହୁଏତ କାଲି ମୁଁ ଆପଣଙ୍କୁ ଉଠିବାକୁ ଅନୁମତି ଦେବି । ଆମେ ହାତୀର ଚଲା-ପଥରେ ବାଡ଼ ଦେଇଦେବୁ, ଆଉ ରାତିରେ ନିଆଁ ଜଳାଇ ରଖିବୁ । ଫଳରେ କୌଣସି ହାତୀ କି ବଣୁଆ ଜାନୁଆର ଆପଣଙ୍କୁ ବିରକ୍ତ କରି ପାରିବ ନାହିଁ ।"

**୨୪ ଜୁଲାଇ :**

ଭାଗନାର ଅଭିନନ୍ଦନ ଜଣାଇ କହିଲେ- "ଏଣିକି ଆପଣଙ୍କୁ କଅଣ ବୋଲି ଡାକିବି ? ଆପଣଙ୍କ ଗୁପ୍ତ ରହସ୍ୟ ଏକ୍ଷଣି ପ୍ରଚାର କରାଯିବ ନାହିଁ । ବରଂ ଆପଣଙ୍କୁ ସାପିଯେନ୍ସ (ଚତୁର) ବୋଲି ଡ଼ାକିବି । ରାଜି ତ ?"

ତହୁଁ ହାତୀ ମଥା ହଲାଇଲା ।

ଭାଗନାର ପୁଣି କହିଲେ- "ମୁଁ ଠାରରେ କଥା କହିବି । ଆପଣ ଶୁଣ୍ଢ ହଲାଇ ଜବାବ ଦେବେ । ଶୁଣ୍ଢ ଉପରକୁ ଉଠିଲେ ଟରେ, ଆଉ ତଳରେ ହଲିଲେ ଟକ୍କା । ଏବେ ଆପଣ ଶୁଣ୍ଢ ହଲାନ୍ତୁ ।"

ହାତୀ ଶୁଣ୍ଢ ହଲାଇବାକୁ ଚେଷ୍ଟା କଲା । ଶୁଣ୍ଢଟା ଗୋଟାଏ ଭଙ୍ଗା ଅଙ୍ଗ ପରି ଏପଟ ସେପଟ ଦୋହଲିବାକୁ ଲାଗିଲା ।



Digitized by srujan ka@gmail.com

''ଏକ୍ଷଣି ଆପଣଙ୍କର ଅଭ୍ୟାସ ହୋଇ ନାହିଁ । ହେଉ, ଦେଖାଯାଉ ଆପଣ ଚାଲି ପାରୁଛନ୍ତି କି ନା ।''

ହାତୀଟା ଚାଲିବାକୁ ଲାଗିଲା । ତା ଆଗ ଗୋଡ଼ଠୁଁ ପଛ ଗୋଡ଼ ବେଶି ସଚଳ ବୋଲି ମାଲୁମ ହେଲା ।

ଭାଗନାର ମତ ଦେଲେ- ''ଦେଖୁଛି, ଆପଣଙ୍କୁ ହାତୀ ହେବାଟା ଅଭ୍ୟାସ କରିବାକୁ ପଡ଼ିବ । ହାତୀର ମଗଜରେ ଯାହା ଥାଏ, ଆପଣଙ୍କ ମଗଜରେ ସେହି ଜିନିଷ ଅଧିକ ନାହିଁ । ତେବେ ଅଚିରେ ଆପଣ ଗୋଡ଼, ଶୁଣ୍ଢ ଓ କାନ ହଲାଇବା ଶିଖିଯିବେ । ଆପଣଙ୍କୁ ଅଭିଜ୍ଞତା ବଳରେ ନାନା ରକମ ଗୁଣ ହାସଲ କରିବାକୁ ହେବ । ଆପଣ କଦାପି ଡରିବେ ନାହିଁ, ସାପିୟେନ୍ସ । ଆମେ ଆପଣଙ୍କ କଡ଼େ କଡ଼େ ରହିଥିବୁ । ଆପଣ ପୂରାପୂରି ଭଲ ହେଇଗଲେ, ଆମେ ୟୁରୋପ ଅଭିମୁଖେ ବାହାରିବା । ମନ କଲେ ଆପଣ ସ୍ୱଦେଶ ଜର୍ମାନୀକୁ ଫେରିଯାଇ ପାରନ୍ତି, ନୋହିଲେ ଆମ ସହିତ ରୁଷିଆରେ ଚିଡ଼ିଆଖାନାରେ ରହି ପାରନ୍ତି । ଏବେ କହନ୍ତୁ ତ, ଆପଣ କିପରି ବୋଧ କରୁଛନ୍ତି ?''

ହାତୀଟା ଶୁଣ୍ଢ ଦ୍ୱାରା ଲମ୍ୱା ଓ ଛୋଟ ଶବ୍ଦ କରିବାକୁ ଲାଗିଲା । ଏହା ଶୁଣି ଭାଗନାର ମୋତେ ଅନୁବାଦ କରି ବୁଝାଇଦେଲେ- ''ମୋ ଦୃଷ୍ଟିଶକ୍ତି ଆଗ ଭଳି ଜଣା ଯାଉ ନାହିଁ । ତେବେ ଶ୍ରବଣ ଓ ଆଘ୍ରାଣ ଶକ୍ତି ଖୁବ୍ ପ୍ରଖର ଅଛି ।''

''ଆପଣଙ୍କର ଯଥେଷ୍ଟ ଉନ୍ନତି ହେଉଛି, ସାପିୟେନ୍ସ''– ଭାଗନାର କହିଲେ ।

ହାତୀ ନିଜର ନୂଆ ଅନୁଭୂତିର କଥା ବଖାଣିଲା- ''ତାହା ଛଡ଼ା ଏହି ଗନ୍ଧଗୁଡ଼ାକ । ପ୍ରତ୍ୟେକ ଗଛ ଓ ଦ୍ରବ୍ୟର ଗୋଟାଏ ଲେଖାଏଁ ନିଜର ଗନ୍ଧ ରହିଛି । ଦେଖନ୍ତୁ, ଏହି ମାଟିର, ଘାସର, ଘୁଷୁରିର, ତମ୍ୱାର ଅଲଗା ଅଲଗା ଗନ୍ଧ ନାକରେ ଆସି ବାଜୁଛି ।''

''ସେଟା ବା କିପରି ସମ୍ଭବ ହେବ ?'' ମୁଁ ପଚାରିଲି ।



Digitized by srujan ka@gmail.com

ଭାଗନାର ଜବାବ ଦେଲେ- "ସେଟା ଅବଶ୍ୟ ଠିକ୍ । ରିଙ୍ଗଙ୍କ ମଗଜଟା ପୂରାପୂରି ଅଭ୍ୟସ୍ତ ହୋଇଗଲେ, ତାଙ୍କର ଠିକ୍ ହାତୀ ପରି ଘରୁ ବୁଦ୍ଧି ନିଶ୍ଚୟ ଆସିଯିବ ।"

ତା ପରେ ସେ ହାତୀକୁ ପଚାରିଲେ- "ଆମେ ଆପଣଙ୍କ ପିଠିରେ ବସି ପାହାଡ଼ରେ ଛାଉଣିକୁ ଗଲେ, ଆପଣ ଆମ ବୋଝ ବୋହି ପାରିବେ ତ, ସାପିୟେନ୍ସ ?"

ଏହି ପ୍ରସ୍ତାବରେ ରାଜି ହୋଇ ସାପିୟେନ୍ସ ମଥା ହଲାଇଲା । ସେ ମୋତେ ଓ ଭାଗନାରଙ୍କୁ ତା ଶୁଣ୍ଢରେ ପିଠି ଉପରକୁ ଟେକି ନେଲା । କିଛି ଜିନିଷପତର ବି ତା ପିଠିରେ ଲଦା ହେଲା । ଆମେ ଚାଲିଲୁ, ଦେଶୀ ଲୋକେ ଆମ ପଛେ ପଛେ ଅନୁସରଣ କଲେ । ଯିବା ବେଳେ ଭାଗନାର ମୋତେ ଜଣାଇଲେ- "ମୋର ଧାରଣା, ସପ୍ତାହ ଦୁଇଟା ଭିତରେ ସାପିୟେନ୍ସ ପୂରାପୂରି ଠିକ୍ ହୋଇଯିବ । ତା ପରେ ତା ପିଠିରେ ବସି ବସ୍‌କୁ ଯିବା, ଆଉ ସେଠାରୁ ଜାହାଜରେ ସାଗର ଯାତ୍ରା ।"

ପାହାଡ଼ ଉପରେ ଛାଉଣି ପଡ଼ିଲା ।

ଭାଗନାର ସାପିୟେନ୍ସକୁ କହିଲେ- "ଏଠାରେ ଆପଣଙ୍କୁ ଅମାପ ଖାଦ୍ୟ ମିଳିବ । ଆପଣ କଦାପି ଛାଉଣି ଠାରୁ ବେଶି ଦୂରକୁ ଯିବେ ନାହିଁ । କେତେ ରକମ ବିପଦ ଘଟି ପାରେ । ଆପଣ ତ ଏଯାଏ ଖାଣ୍ଟି ହାତୀ ନୁହନ୍ତି ।"

ମଥା ହଲାଇ ହାତୀ ତା ଶୁଣ୍ଢରେ ପାଖଆଖରେ ଗଛଲତାର ଡାଳ ଭାଙ୍ଗିବାକୁ ଲାଗିଲା । କିନ୍ତୁ ହଠାତ୍ ରଡ଼ି ଛାଡ଼ି ଶୁଣ୍ଢ ଟେକି ସେ ଭାଗନାରଙ୍କ ପାଖକୁ ଧାଇଁ ଆସିଲା ।

କଅଣ ହୋଇଛି ବୋଲି ପଚାରିବାରୁ, ହାତୀ ଭାଗନାରଙ୍କ ମୁଖ ପାଖକୁ ତା ଶୁଣ୍ଢଟା ବଢ଼ାଇ ଦେଲା । ଭାଗନାର ପରଖି ଦେଖିଲେ, ଶୁଣ୍ଢର ନରମ ଜାଗାଟିରେ କଣ୍ଟାଟାଏ ପଶି ଯାଇଛି । ସେ ତୁରିତେ ସେଟା କାଢ଼ି ଦେଇ ହାତୀକୁ ସାବଧାନ କରିଦେଲେ ।



Digitized by srujan ka@gmail.com

ହାତୀ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ି ଶୁଣ୍ଢ ହଲାଇ ପୁଣି ବଣ ଆଡ଼େ ଚାଲିଗଲା ।

**୨୭ ଜୁଲାଇ :**

ହାତୀ ପହିଲେ ଘାସ, ପତର ଓ ନରମ କଅଁଳ ଡାଳ ଖାଉଥିଲା । କ୍ରମେ କ୍ରମେ ତା ଭୋକ ବଢ଼ିଯିବାରୁ, ସେ ଖାଣ୍ଟି ହାତୀ ପରି ମୋଟା ମୋଟା ଚୌଡ଼ା ଡାଳପତର ଭାଙ୍ଗି ମୁହଁରେ ପୂରାଇବାକୁ ଲାଗିଲା ।

ଦିନକୁ ଦିନ ଛାଉଣୀର ଚଉଦିଗରେ ଗଛଗୁଡ଼ିକର ଚେହେରା ଶୋଚନୀୟ ହୋଇଗଲା । ବଣବୁଦାଗୁଡ଼ାକରେ ପତରଟିଏ ସୁଦ୍ଧା ରହିଲା ନାହିଁ, ଡେଙ୍ଗା ଡେଙ୍ଗା ଗଛଗୁଡ଼ିକର ଡାଳ ଶାଖାସବୁ ଭାଙ୍ଗି ଚୁରମାର ହୋଇଗଲା । ଏଗୁଡ଼ିକର ସମୂଳେ ବିନାଶ ସକାଶେ ହାତୀ ବରାବର ମାଡ଼ି ମାଗୁଥିଲା ।

**୧ ଅଗଷ୍ଟ :**

ଆଜି ସକାଳେ ହାତୀ ସାପିୟେନ୍ସର ଦେଖା ମିଳିଲା ନାହିଁ । ପହିଲେ ଭାଗନାର ବିଚଳିତ ହେଲେ ନାହିଁ । ସେ କହିଲେ- ''ସେ ତ ହଜିଗଲା ଭଳି କୌଣସି ଚିଜ ନୁହେଁ । ତାହାକୁ ଆକ୍ରମଣ କରିବାକୁ କୌଣସି ଜାନୁଆର ସୁଦ୍ଧା ସାହସ କରିବ ନାହିଁ । ହୁଏତ ରାତିରେ ସେ କିଛି ଦୂରକୁ ଚାଲି ଯାଇଥିବ ।''

କିନ୍ତୁ ବହୁ ସମୟ ବିତିଗଲେ ସୁଦ୍ଧା ହାତୀର ଦେଖା ମିଳିଲା ନାହିଁ । ଶେଷରେ ଠିକ୍ ହେଲା, ଆମେ ତାହାକୁ ଖୋଜିବାକୁ ବାହାରିବୁ । ଦେଶୀ ଲୋକମାନେ ହାତୀର ପାଦ ଚିହ୍ନ ବାରି ବାରି ତା ଯିବା ବାଟ ଠଉରାଇଲେ । ଆମେ ସେମାନଙ୍କ ପଛେ ପଛେ ଚାଲିଲୁ ।

ହାତୀର ପଥ ଧରି ଛାଉଣୀଠୁଁ ବହୁ ଦୂରକୁ ଆମେ ଚାଲିଗଲୁ । ଦେଖିଲୁ, ସେ ଗୋଟାଏ କାଦୁଆ ପଡ଼ିଆ ଭିତରେ ଯାଇଛି । ଶେଷ ଅବଧି ଆମେ ନଦୀ କୂଳରେ ଯାଇ ହାଜର ହେଲୁ । ନଦୀର ଆର ପଟକୁ ଯିବା ଲାଗି ହୁଏତ ହାତୀ ପାଣିରେ ପଶିଛି ।

ଆମ ଦେଶୀ ଲୋକେ ପାଖ ଗାଁରୁ ଗୋଟିଏ ନୌକା ଯୋଗାଡ଼



Digitized by srujan ka@gmail.com

କଲେ । ଆମେ ସେଥିରେ ନଦୀ ପାର ହେଲୁ । କିନ୍ତୁ ସେ ପଟେ ହାତୀର ପାଦ-ଚିହ୍ନଟିଏ ସୁଦ୍ଧା ମିଳିଲା ନାହିଁ । ସାଙ୍ଗ ଲୋକେ କହିଲେ, ହାତୀ ହୁଏତ ସୁଅରେ ଭାସି ଯାଇଥିବ । ତେଣୁ ଆମେ ନୌକାରେ କେତେ ମାଇଲ ଗଲୁ । କିନ୍ତୁ ହାତୀର କିଛି ପତ୍ତା ପାଇଲୁ ନାହିଁ । ଆମର ସବୁ ମେହନତ ବିଫଳ ହେଲା ।

୮ **ଅଗଷ୍ଟ :**

ହାତୀକୁ ଖୋଜାଖୋଜିରେ ସପ୍ତାହଟିଏ କଟିଲା । କିନ୍ତୁ ଆମର ସକଳ ଚେଷ୍ଟା ବୃଥା ହେଲା । କୌଣସି ଚିହ୍ନ ନ ରଖି ହାତୀ ନିଖୋଜ ହୋଇ ଯାଇଥିଲା ।





Digitized by srujan ka@gmail.com

## ଦଶ

ଦେନିସଭ କହିଲା- ''ପଢ଼ା ସରିଲା ।''

ହାତୀର ପିଠି ଥାପୁଡ଼ାଇ ଭାଗନାର କହିଲେ- ''ତାହା ହେଲେ ଏଇ ନିଅ ତା ପରର ଘଟଣା । ତୁମେ ପଢୁଥିଲା ବେଳେ ହାତୀ ସାପିଯେନ୍ସ ଓରଫ ହୈଟୀ-ଟୈଟୀ ଓରଫ ବୈଜ୍ଞାନିକ ରିଙ୍ଗ ନିଜ ଅଭିଯାନର କାହାଣୀ ମୋତେ ଶୁଣାଉଥିଲା । ତାହାକୁ ଜୀଅନ୍ତା ଦେଖିବାର ଆଶା ମୁଁ ପ୍ରାୟ ଛାଡ଼ି ଦେଇଥିଲି । ଯାହା ହେଉ, ସେ ନିଜ ଚେଷ୍ଟାରେ ୟୁରୋପ ଫେରିଯାଇ ପାରିଛି । ଏହି ଟିପା ଖାତାଟା ପଢ଼ି ଦେଖ, ଏଥିରେ ସବୁ କିଛି ଲେଖା ଅଛି ।''

ଦେନିସଭ ଟିପା ଖାତାଟି ଭାଗନାରଙ୍କ ହାତରୁ ନେଲା । ସାପିଯେନ୍ସ ଯାହା ଯାହା ଭାଗନାରଙ୍କୁ କହିଥିଲା ସେସବୁ ଏଥିରୁ ଜଣା ପଡ଼ିଲା ।

''ହାତୀ ହେଲା ପରଠୁଁ ମୋର ଯେତେ ଅଭିଜ୍ଞତା ହୋଇଛି ସେସବୁ ଆପଣଙ୍କ ଠାରେ ପ୍ରକାଶ କରିବା ସହଜ ନୁହେଁ । ମୁଁ କେବେ ସପନରେ ସୁଦ୍ଧା ଭାବି ନ ଥିଲି ଯେ ମୁଁ ଅଧ୍ୟାପକ ଟାର୍ନାରଙ୍କ ସହକାରୀ ହୋଇ ହଠାତ୍ ଦିନେ ହାତୀରେ ରୂପାନ୍ତରିତ ହେବି, ଆଉ ଜୀବନର



Digitized by srujan ka@gmail.com

ଏକ ଭାଗ ଆଫ୍ରିକାର ଘନ ଅରଣ୍ୟରେ କଟାଇବି । ଯାହା ହେଉ, ଆପଣଙ୍କୁ ଘଟଣାଗୁଡ଼ିକ କ୍ରମାନ୍ୱୟରେ ଜଣାଇବାକୁ ମୁଁ ଚେଷ୍ଟା କରିବି ।



ଛାଉଣୀ ଠାରୁ ବେଶ୍ ଦୂରକୁ ମୁଁ ଚାଲି ଯାଉଥିଲି । ଗୋଟିଏ ପଡ଼ିଆରେ ଆରାମରେ ଗୋଛାଏ ଗୋଛାଏ ରସାଳ ଘାସ ଖାଉଥିଲି । ସେଠାରେ ଘାସ ସରିଯିବାରୁ ଅଧିକ ଚାରଣ ଭୂମି ଖୋଜିବାକୁ ବଣ ଭିତରକୁ ପଶିଲି । ରାତିରେ ତୋଫା ଜହ୍ନ ପଡ଼ିଥିଲା । ବାଦୁଡ଼ି, ପେଚା, ଇତ୍ୟାଦି ନିଶାଚର ପକ୍ଷୀଗୁଡ଼ିକ ଚଉଦିଗରେ ଉଡ଼ି ବୁଲୁଥିଲେ । ଧୀରେ ଧୀରେ ନିଜର ବିଶାଳ ଦେହର ବୋଝ ବୋହି ମୁଁ ସୁବିଧାରେ ଆଗେଇ ଯାଉଥିଲି । ମୋ ଡାହାଣ ବାମ ଉଭୟ ପଟରେ ଶୁଣ୍ଢ ଦ୍ୱାରା ନାନା ରକମ ବଣୁଆ ଜାନୁଆରର ଗନ୍ଧ ପାଉଥିଲି । ମୋର ଆଦୌ ଭୟ ନ ଥିଲା । କାରଣ ସବୁ ଜାନୁଆରଙ୍କଠୁଁ ମୋର ଶକ୍ତି ଖୁବ୍ ବେଶି । ଏପରିକି ସିଂହ ସୁଦ୍ଧା ମୋତେ ଖାତିର କରି ବାଟ ଛାଡ଼ିଦିଏ । ଅଥଚ ମୂଷା କି ଶିଆଳ ପରି ଛୋଟ ଜାନୁଆରର ଖସ୍‌ଖସ୍ ଶବ୍ଦରେ ମୁଁ ଚମକି ପଡୁଥିଲି । ମୋତେ ମାଲୁମ ଥିଲା, ପାଖଆଖରେ ଥିବା ଲୋକେ ମୋତେ ନିଶ୍ଚୟ ସାହାଯ୍ୟ କରିବାକୁ ଧାଇଁ ଆସିବେ ।

ତେଣୁ ମୁଁ ଧୀରେ ଧୀରେ ପାଦ ପକାଇ ଗୋଟିଏ ଛୋଟ ଫାଙ୍କା ଜାଗାକୁ ଆସିଲି । ପୂଳାଏ ଘାସ ଛିଡ଼ାଇବା ଲାଗି ଶୁଣ୍ଢ ତଳକୁ ବଢ଼ାଉଛି,



Digitized by srujan ka@gmail.com

ଠିକ୍ ଏତିକି ବେଳେ ଅଚାନକ ମୋର ନଜର ପଡ଼ିଲା, ପାଣି ପାଖରେ ନଳବନ ଭିତରେ ଗୋଟିଏ ଚିତାବାଘ ମୋତେ କଟମଟ କରି ଅନାଇଛି । ହୁଏତ ମୁଁ ପୂରାପୂରି ହାତୀ ହୋଇ ନ ଥିବାରୁ ଏବଂ ମଣିଷ ପରି ଅନୁଭୂତି ମୋର ଥିବାରୁ, ମୁଁ ଭୀଷଣ ଭୟରେ ଥରହର ହୋଇ ଧାଇଁବାକୁ ଲାଗିଲି । ସେତେ ବେଳେ ଗଛଲତାସବୁ ଭାଙ୍ଗି ପଡୁଥିଲା । ମୋତେ ଜୋରରେ ଦୌଡ଼ିବାର ଦେଖି ବହୁ ଜାନୁଆର ଭୟରେ ବଣ ବୁଦାରୁ ବାହାରି ଏଣେ ତେଣେ ପଳାଇଲେ । ସେଥିରେ ମୋର ବି ଭୟ ବଢ଼ିଗଲା । ମୁଁ ଧାଇଁ ଧାଇଁ ଶେଷରେ ଗୋଟିଏ ନଦୀର କୂଳରେ ଯାଇ ଠିଆ ହେଲି । ମଣିଷ ଥିଲା ବେଳେ ମୁଁ ପହଁରା ଜାଣି ନ ଥିଲି । ତଥାପି ଚିତାବାଘଟି ମୋ ପଛରେ ଥିବା ଜାଣି ପାରି ମୁଁ ନଦୀକୁ ଡେଇଁ ପଡ଼ିଲି । ପାଣିରେ ମୋ ମଥାଟା ଟିକିଏ ଥଣ୍ଡା ହେଲା । ଘଣ୍ଟା ଘଣ୍ଟା ଧରି ମୁଁ ପହଁରି ଚାଲିଲି । ରବି ଗଗନକୁ ଉଠିଲା ବେଳକୁ ମୁଁ ପାଣିରେ ଭାସି ଯାଉଥିଲି । ନଦୀରେ ଗୋଟାଏ ନୌକା ଦିଶିଲା । ମଣିଷକୁ ମୁଁ ଡରୁ ନ ଥିଲି । ଲାଗେ ଲାଗେ ଦି ଥର ବନ୍ଧୁକର ଆବାଜ ମୋ କାନରେ ପଡ଼ିଲା । ମଥା ବୁଲାଇ ଦେଖିଲି, ଜଣେ ଗୋରା ଲୋକ ମୋତେ ଗୁଳି କାଉଛି । ମୋର ଇଚ୍ଛା ହେଲା, ବଡ଼ ପାଟିରେ ଇଂରେଜ ଲୋକଟିକୁ ଗୁଳି ବନ୍ଦ କରିବାକୁ କହିବି । କିନ୍ତୁ ତୁଣ୍ଡରୁ କିଛି ଶବ୍ଦ ବାହାରିଲା ନାହିଁ । ଆପଣଙ୍କ କଥା ମୋର ମନେ ପଡ଼ିଗଲା । ଆପଣ ପରା ମୋତେ କହିଥିଲେ, ମୋ ଆଖି ଓ କାନର ମଝି ଜାଗାଟା ସବୁ ଠାରୁ ବେଶି ବିପଦଜନକ । ତେଣୁ ଆପଣଙ୍କ ଉପଦେଶ ମାନି ସେହି ଜାଗାଟା ଲୁଚାଇ ମଥା ବୁଲାଇ ପୂରା ଦମରେ ଯାଇ କୂଳରେ ଉଠିଲି ସିନା, କିନ୍ତୁ ମୋ ମଥାଟା ବଣ ଆଡ଼କୁ ଥିଲା । ତେଣୁ ସେ ମୋ ପଛରୁ ଗୁଳି ନ ଛାଡ଼ି ମୋ ମଥା ବୁଲାଇବା ଯାଏ ଅପେକ୍ଷା କରିବାକୁ ଲାଗିଲା । କିନ୍ତୁ ମୁଁ ଦ୍ରୁତ ଗତିରେ ବଣ ଭିତରକୁ ପଶିଗଲି । କ୍ରମେ କ୍ରମେ ବଣ ଘଞ୍ଚ ହେଲା । ଲତାଗୁଳାକ ମୋ ଦେହରେ ଏମିତି ଭିଡ଼ିଗଲା



Digitized by srujan ka@gmail.com

ଯେ ମୋତେ ଅଟକିବାକୁ ପଡ଼ିଲା । ଏଣେ ଭୀଷଣ କ୍ଳାନ୍ତ ହୋଇ ମୁଁ ମାଟିରେ ଚିତ୍ ହୋଇ ଶୋଇଗଲି ।

ସେହି ସମୟରେ ମୁଁ ଗୋଟାଏ ଭୟଙ୍କର ସପନ ଦେଖିଲି । ମୁଁ ହେଉଛି ବିଶ୍ୱ ବିଦ୍ୟାଳୟର ଅଧ୍ୟାପକ ଟାର୍ନାରଙ୍କ ସହକାରୀ । ବର୍ଲିନରେ ଛୋଟ କୋଠରୀଟିରେ ମୁଁ ବସିଥିଲି । ଚମତ୍କାର ରାତି । ଝରକା ବାଟେ କେବଳ ତାରାଟିଏ ଦିଶୁଥିଲା । ବାହାରୁ ଫୁଟିଲା ଲାଇମ ଗଛର ସୁଗନ୍ଧ ଭାସି ଆସୁଥିଲା । ଛୋଟ ଟେବୁଲ ଉପରେ ଗୋଟିଏ ନୀଳ କାଚ ଗିଲାସରେ କିଛି ବାସନା ନାଲି ଫୁଲ ରହିଥିଲା । ବହି ଉପରେ ମଥା ରଖି ମୁଁ ପର ଦିନ ସକାଶେ ପାଠ ତିଆରି କରୁଥିଲି । ତା ପରେ ଟିକିଏ ଢୁଳେଇ ପଡ଼ିବାରୁ ଗୋଟାଏ ଅଜବ ଖରାପ ସପନ ଦେଖିଲି । ମୁଁ ହାତୀ ହୋଇ ଯାଇଛି, ଗ୍ରୀଷ୍ମ ମଣ୍ଡଳର ଗୋଟିଏ ବଣରେ ରହିଛି । ଏତିକି ବେଳେ ହଠାତ୍ ମୁଁ ଜାଗି ଉଠିଲି । କିନ୍ତୁ ଏ ତ ସପନ ନୁହେଁ, ସତରେ ମୁଁ ଯେ ଆଧୁନିକ ବିଜ୍ଞାନର ଯାଦୁ ବଳରେ ହାତୀ ପାଲଟି ଯାଇଛି ।

ଜଣେ ଧଳା ଲୋକର-ସାଦା ଚମତ୍କାର ଗନ୍ଧ ଡାହାଣ ଦିଗରୁ ଆସି ମୋ ନାକରେ ବାଜିଲା । ହୁଏତ ନୌକାରୁ ମୋତେ ଗୁଳି ଲାଛିଥିବା ଲୋକଟି ଫେର୍ ମୋ ପଛେ ପଛେ ଗୋଡ଼ାଇଛି । ତତ୍କ୍ଷଣାତ୍ ମୁଁ କୁଦି ପଡ଼ିଲି । ତେଣୁ ବାମ ଦିଗକୁ ବଣ ବୁଦା ସବୁ ମାଡ଼ି ଚକଟି ଧାଁଇବାକୁ ଲାଗିଲି । ପ୍ରାୟ ଦି କିଲୋମିଟର ଧାଇଁଲା ପରେ ମୁଁ ସାହସରେ ମଥା ବୁଲାଇ ଗନ୍ଧ ବାରିଲି । ସେତେ ବେଳେ ବି ଲୋକଟିର ଗନ୍ଧ ଭାସି ଆସୁଥିଲା। ମୁଁ ଆଉ ଅଟକିଲି ନାହିଁ ।

ଅନ୍ଧାର ରାତି ମାଡ଼ି ଆସିଲା । କିଛି ସମୟ ପରେ ପାଦ ତଳେ ପାଣି ମାଲୁମ ହେଲା । ହୁଏତ ନଦୀଟିଏ ପଡ଼ିଲା । ପହଁରିବାକୁ ଲାଗିଲି । କିନ୍ତୁ ହଠାତ୍ ମୋ ପାଦ ମାଟିରେ ବାଜିଲା । ତେଣୁ ଚାଲିବାକୁ ଲାଗିଲି । ବାଟରେ ଅନେକ ନଦୀ ନାଳ ପାରି ହେବାକୁ ପଡିଲା । ରାତି ସାରା



Digitized by srujan ka@gmail.com

ମୁଁ ଏପରି ଭାବରେ ଘୂରି ବୁଲିଲି । ବାଟ ହୁଡ଼ିଥିବାର କଥା ସକାଳେ ମୋତେ ମାଲୁମ ହେଲା ।

ଆହୁରି କେତେ ଦିନ ଗତ ହେଲା । ମୋର ଭୟ ପ୍ରାୟ କଟିଗଲା । ତଥାପି ମୋତେ ରାତିରେ ଡର ମାଡୁଥିଲା । ହୁଏତ ସିଂହ କି ବାଘ ପରି ହିଂସ୍ର ଜାନୁଆର ମୋତେ ଆକ୍ରମଣ କରି ପାରନ୍ତି । ତେବେ ଦିନ ବେଳେ ଶିକାରୀଙ୍କୁ ଭାରି ଡରୁଥିଲି, ବିଶେଷତଃ ଧଳା ଚମଡ଼ାଙ୍କୁ । ସେମାନେ ଫାନ୍ଦ ପାତି ହାତୀ ଧରନ୍ତି । ତଥାପି ମଶାଲ ଜଳାଇ ମୋତେ ଡରାଇ ତଡ଼ି ନେଇ ଖେଦାରେ ଢୁକାଇବା ସହଜ ନ ଥିଲା । ତେଣୁ ବରାବର ଖୁବ୍ ହୁସିଆର ହୋଇ ବାଟଘାଟ ପରଖି ମୁଁ ଧୀରେ ଧୀରେ ଆଗୋଉଥିଲି ।

ଦିନେ କିଛି ଦୂରରୁ ଶୁଣ୍ଢ ବଢ଼ାଇ ହଠାତ୍ ହାଉଆରୁ ଗୋଟାଏ ନୂଆ ଗନ୍ଧ ବାରି ମୁଁ ଅତି ସାବଧାନରେ ଆଗେଇଲି । ବଡ଼ି ସକାଳୁ ବଣରେ ବହଳ ବୁଦାର ଆଢୁଆଳରେ ଲୁଚି ଯାଇ ମୁଁ ସାମନା ଫାଙ୍କା ଜାଗାଟାକୁ ଉଙ୍କି ମାରି ଦେଖିଲି । ଆକାଶରେ ପାଉଁଶିଆ ଚାନ୍ଦରୁ କିରଣ ଆସି କେତେଗୁଡ଼ିଏ ଟିକି ଟିକି କୁଡ଼ିଆ ଉପରେ ପଡ଼ିଥିଲା । ସେସବୁ ପିଲାଙ୍କ ଖେଳ ଘର ପରି ମାଲୁମ ହେଲା । ହଠାତ୍ ମଣିଷ ପରି କେତୋଟି ଛୋଟ ଛୋଟ ଜୀବ ତା ଭିତରୁ ବାହାରି ଆସିଲେ । ପ୍ରାୟ ଦେଢ଼ ମିଟର ଉଚ୍ଚ କୁଡ଼ିଆଟି ପାଖରେ ସେମାନେ ଠୁଳ ହେଲେ । ବୁଝି ପାରିଲି, ତାହା ହେଲେ ଏହି କ୍ଷୁଦ୍ରତମ ମଣିଷଗୁଡ଼ାକ ହେଲେ ପିଗ୍‌ମୀ– ଦେହର ଚମ ଫିକା ବାଦାମୀ, ନାଲି କେଶ, ସୁଗଠିତ ଦେହ, ଉଚ୍ଚତା ଅଶୀ କି ନବେ ସେଣ୍ଟିମିଟରରୁ ଅଧିକ ନୁହେ, କିଚିରି ମିଚିରି କରି କି ଭାଷାରେ କଥାଭାଷା ହେଉଥିଲେ । ଆଗରୁ ମୁଁ ଜାଣିଥିଲି, ଏହି ବାମନଗୁଡ଼ାକ ହେଉଛନ୍ତି ହାତୀର ସବୁ ଠାରୁ ବଡ଼ ଶତ୍ରୁ । ସେମାନେ ତୀରରେ ବିଷ ବୋଳି ଲାଛିଲେ ହାତୀ ତକ୍ଷଣେ ମରିଯାଏ ।

ଏହା ଜାଣି ପାରି ମୁଁ ଖୁବ୍ ଜୋରରେ ଧାଇଁଲି । ମୋ ପଛେ ପଛେ ସେହି ବାମନ ଲୋକଗୁଡ଼ାକ ପାଟିଗୋଳ କରି ମୋତେ



Digitized by srujan ka@gmail.com

ଖେଦୁଥିଲେ । କ୍ରମେ କ୍ରମେ ସେମାନେ ପାଖେଇ ଆସୁଥିଲେ । ସେତେବେଳକୁ ମୁଁ ଧଇଁସଇଁ ହୋଇ ଟଳି ପଡ଼ିବାକୁ ବସିଲି । ହଠାତ୍ ଶୁଣ୍ଢରେ ହାତୀ-ପଲର କଡ଼ା ଗନ୍ଧ ପାଇଲି । ପତଳା ବଣରେ ଅଙ୍କାବଙ୍କା ପଥରେ ମୁଁ ଧାଇଁଲି । ବଡ଼ ବଡ଼ ଗାତଗୁଡ଼ିକରୁ ହାତୀର ପାଦର ଦାଗ ଜଣା ପଡ଼ିଲା । ତା ପରେ ହଠାତ୍ ଦେଖିଲି, ପଲେ ହାତୀ ମାଟିରେ ବସି ପାକୁଳି କରୁଛନ୍ତି, କେତେକ ଗଛ ପାଖରେ ଛିଡ଼ା ହୋଇ ଲାଙ୍ଗୁଳ ହଲାଉଛନ୍ତି, ଆଉ କେତେକ ନଦୀରେ ଗାଧୋଉଛନ୍ତି । ମୋ ପାଦର ଶବ୍ଦ ଶୁଣିଲା କ୍ଷଣି ସେମାନଙ୍କ ଭିତରେ ଚହଳ ପଡ଼ିଗଲା, ନଦୀ କୂଳରେ କୁଦାକୁଦି କରି ସେମାନେ ରଡ଼ି ଛାଡ଼ିଲେ । ପଲର ଦଳପତି ପହିଲେ ନଦୀ ଆଡ଼କୁ ଧାଇଁଲା, ପାଣିରେ ପହଁରି ପହଁରି ଯାଇ ଆର କୂଳରେ ଉଠିଲା । ତହୁଁ ମୁଁ ବି ପହଁରି ନଦୀଟା ପାର ହୋଇଗଲି । ମାଇ ହାତୀଗୁଡ଼ାକ ଠିକ୍ ସେମିତି କଲେ । ମୋ ପଛେ ପଛେ ପିଗ୍‌ମୀଗୁଡ଼ାକ ନଦୀ କୂଳ ଯାଏ ଧାଇଁ ଆସିଲେ । ତା ପରେ କଅଣ ଘଟିଲା, କିଛି ମୋତେ ମାଲୁମ ନାହିଁ ।

ହାତୀଗୁଡ଼ିକ ସହିତ ମୁଁ କେତେ ଘଣ୍ଟା ଦୌଡ଼ିଲି । ଖୁବ୍ କ୍ଳାନ୍ତ ହୋଇ ପଡ଼ିଲି । ତଥାପି ମନେ ମନେ ଶପଥ କରିଥିଲି, କୌଣସି ମତେ ମୁଁ ପଛରେ ପଡ଼ିବି ନାହିଁ । ହାତୀମାନେ ମୋତେ ଦଳରେ ମିଶାଇଲେ, ମୁଁ ନିରାପଦରେ ସେଠାରେ ରହିବି ।





Digitized by srujan ka@gmail.com

## ଏଗାର

ଅବଶେଷରେ ପଲର ଦଳପତି ଅଟକିଲା । ତା ସହିତ ଅନ୍ୟମାନେ ମଧ୍ୟ । ପହିଲୁ ମୋତେ ମାଲୁମ ହେଲା, ମୋ ଉପରେ ସେମାନଙ୍କ ନଜର ପଡ଼ି ନାହିଁ । କେତେକ ପଛରେ ପଡ଼ିଥିଲେ । ସଭିଏଁ ଆସି ଏକାଠି ହେଲାରୁ, ସେମାନେ ଟିକିଏ ଶାନ୍ତ ହେଲେ । ତହୁଁ ହାତୀଗୁଡ଼ିକ ଶୁଣ୍ଢରେ ମୋତେ ଶୁଙ୍ଘିଲେ, ମୋତେ ଭଲ କରି ଠଉରାଇଲେ, ମୋ ଚାରି ପଟେ କିଛି ସମୟ ଘୂରିଲେ, ଆଉ ଗୋଟାଏ ନରମ ଆବାଜ କଲେ । ହୁଏତ ସେମାନେ ମୋତେ କିଛି ପଚାରୁଥିଲେ । କିନ୍ତୁ ମୁଁ ତୁନି ରହିଲି ।

ପଲର ଦଳପତିକୁ ମୁଁ ଅଧିକ ଡରୁଥିଲି । ଜାଣିଥିଲି, ଭାଗନାର ମୋତେ ଅପରେସନ କରିବା ଆଗରୁ ମୁଁ ବି ଅଣ୍ଡିରା ହାତୀ ଥିଲି । ହୁଏତ ସେହି ପଲର ନୂଆ ଦଳପତିଟି ମୋ ସହିତ ଲଢ଼େଇ କରିବ । ସେହି ମହାବଳ ଦଳପତି ମୋ ପାଖକୁ ଆଗେଇ ଆସି ହଠାତ୍ ତା ଲମ୍ବା ଦାନ୍ତଟା ମୋ ଦେହରେ ଭୁଷିଦେଲା । ମୋତେ ଭାରି ଡର ମାଡ଼ିଲା । କିନ୍ତୁ ମୁଁ ନିରୀହ ଭାବରେ ଛିଡ଼ା ହୋଇ ରହିଲି । ସେ ଆଉ ଥରେ ଦାନ୍ତ ଭୁଷିଦେଲାରୁ ମୁଁ ଖାଲି ଗୋଟାଏ ପଟକୁ ଟିକିଏ ଘୁଞ୍ଚିଗଲି ।



Digitized by srujan ka@gmail.com

ତା ପରେ ହାତୀ ପୂରା ଶୁଣ୍ଢଟା ଫେରାଇ ନେଇ ମୁଖ ଭିତରେ ପୂରାଇ ଚୁଷିଲା । ସେତେ ବେଳେ ହାତୀର ଭାଷା ମୋତେ ଜଣା ନ ଥିଲା । ତେଣୁ ମୁଁ ବି ଶୁଣ୍ଢଟା ମୁଖ ଭିତରେ ପୂରାଇଲି ।

ପହିଲୁ ମୁଁ ଭାରି ଡରୁଥିଲି, କାଳେ ମୁଁ ସାଧାରଣ ହାତୀ ନୁହେ ବୋଲି ଭାବି ମୋତେ ଦଳରୁ ତଡ଼ିଦେବେ । କିନ୍ତୁ ଦେଖିଲି, ସେମାନଙ୍କ ମନୋଭାବ ମୋ ପ୍ରତି ସରଳ । ସେମାନେ ଭାବିଲେ, ମୋ ମଗଜ ଟିକିଏ ଖରାପ ହୋଇଥିବାରୁ ମୁଁ କାହାରି କିଛି ଅନିଷ୍ଟ କରିବି ନାହିଁ । ସେମାନେ ଭାବିଲେ, ମୋ ମଥା ଟିକିଏ ଖରାପ ହୋଇଥିବାରୁ ମୁଁ କାହାରି କିଛି ଅନିଷ୍ଟ କରିବି ନାହିଁ । ଆମେ ବରାବର ଗୋଟିଏ ପରେ ଗୋଟିଏ ଏକା ଧାଡ଼ିରେ ଚାଲୁଥିଲୁ । ସକାଳ ଦଶଟାରୁ ଉପରଓଳି ତିନିଟା ଯାଏ ଆମେ ବିଶ୍ରାମ ନେଉଥିଲୁ, ତା ପରେ ଫେର୍ ଚରି ବୁଲୁଥିଲୁ । ରାତିରେ କେତେ ଘଣ୍ଟା ବିଶ୍ରାମ ମାତ୍ର । ଜଣେ ପହରା ଦେଉଥିଲା । ଏପରି ଭାବରେ ମାସେ କାଳ ମୁଁ ହାତୀ ପଲ ସହିତ ଘୂରି ବୁଲିଲି ।

ଦିନେ ଖୋଲା ପଡ଼ିଆରେ ଚରୁଥିଲି । ଚଉଦିଗରେ ଖାଲି ଘାସ । ମୋର ପହରାର ପାଳି । ଆକାଶରେ ଚାନ୍ଦ ନ ଥିଲା, କେବଳ ତାରାରେ ଭରି ଯାଇଥିଲା । ପଲର ସଭିଏଁ ଚୁପଚାପ୍ ପଡ଼ି ରହିଥିଲେ । ଟିକିଏ ଭଲ କରି ଶୁଣିବା ଓ ଶୁଙ୍ଘିବା ଲାଗି-ମୁଁ କିଛି ଦୂର ଆଗେଇ ଯାଇଥିଲି । ଅଚାନକ ବହୁ ଦୂରରେ ଗୋଟିଏ ଆଲୁଅ ଦେଖାଗଲା । ଆଲୁଅଟା ଲିଭି ଯାଉଥିଲା, ଫେର୍ ଜଳି ଉଠୁଥିଲା ।

କିଛି ସମୟ ପରେ ପ୍ରଥମ ଆଲୁଅଟିର ବାମ ପଟରେ ଆଉ ଗୋଟାଏ ଆଲୁଅ ଜଳି ଉଠିଲା, ତା ପରେ ଆଉ କିଛି ଦୂରରେ ତୃତୀୟ ଓ ଚତୁର୍ଥ ଆଲୁଅ । ସମାନ ଦୂରତା ରଖି ଗୋଟାକ ପରେ ଗୋଟାଏ ଆଲୁଅ ଜଳୁଥିଲା । ଠିକ୍ ସେତିକି ବେଳେ ମୁଁ ଲକ୍ଷ୍ୟ କଲି, ବିପରୀତ ଦିଗରୁ ବି ସେହି ଏକା ରକମ ଆଲୁଅର ଶିଖା ଦିଶିଲା । ଯାହା ହେଉ, ଆମେ ଦି ଧାଡ଼ି ଆଲୁଅର ମଝିରେ ରହିଥିଲୁ ।



Digitized by srujan ka@gmail.com

ସମୁଦାୟ ପଲ ଭିତରେ ଏକମାତ୍ର ମୁଁ ପରିସ୍ଥିତିଟା ବୁଝି ପାରିଥିଲି । ସେଟା ମୋ ପକ୍ଷରେ ଗୋଟାଏ ସୁଯୋଗ ନ ଥିଲା । କଅଣ କରିବି ମୁଁ କିଛି ଠିକ୍ କରି ପାରିଲି ନାହିଁ । ଆଲୁଅ ଆଡ଼େ ତ ମୋଟେ ଯାଇ ହେବ ନାହିଁ । କାରଣ ସେଠାରେ ଅସ୍ତ୍ରଶସ୍ତ୍ର ଧରି ମଣିଷମାନେ ଜଗି ରହିଛନ୍ତି । ତଥାପି ମୁଁ ମନେ ମନେ ମୋ ବାଟ ଠିକ୍ କରି ସାରିଥିଲି । ମୋ ଅଜାଣତରେ ମୁଁ ଦଳ ଠାରୁ ଧୀରେ ଧୀରେ ଖସି ଆସୁଥିଲି ।

ସେତେ ବେଳକୁ ଶିକାରୀମାନଙ୍କର ପାଟିଗୋଳ, ବାଇଦର ବାଜଣା, ସିଟି, ଗୁଳି ଛାଡିବା, ଇତ୍ୟାଦି ଆରମ୍ଭ ହୋଇ ଯାଇଥିଲା । ମୁଁ ଗୋଟାଏ ବଡ଼ ଶିଙ୍ଗା ଭଳି ଆବାଜ କଲି । ହାତୀଗୁଡ଼ାକ ଧଡ଼ପଡ଼ ଉଠି ପଡ଼ି ଭୟଭୀତ ହୋଇ ଡକାଡକି ଓ କୁଦାକୁଦି ଆରମ୍ଭ କରିଦେଲେ । ଏପରି ଭୟଙ୍କର ଗର୍ଜନ ଯେ ମେଦିନୀ ଥରହର କମ୍ପି ଉଠିଲା । ହାତୀସବୁ ପାଖଆଖକୁ ଅନାଇ ଦେଖିଲେ, ସତେକି ଆଲୁଅଗୁଡ଼ାକ ଧୀରେ ଧୀରେ ପାଖେଇ ଆସୁଥିଲା । ହାତୀସବୁ ରଡ଼ି ବନ୍ଦ କରି ଗୋଟାଏ ଦିଗକୁ ଲକ୍ଷ୍ୟ କରି ଧାଇଁଲେ । କିନ୍ତୁ ତେଣେ ଶିକାରୀମାନଙ୍କର ପାଟିଗୋଳ ବଢ଼ିବାର ଦେଖି ସେମାନେ ବିପରୀତ ଦିଗକୁ ଛୁଟିଲେ ।

କିନ୍ତୁ ମୁଁ ହାତୀ ପଲ ସହିତ ନ ଯାଇ ଏକା ପଡ଼ିଗଲି । ହାତୀ ପଲ ଭିତରେ ଯେଉଁ ଭୟ ଖେଳି ଯାଉଥିଲା, ତାହା ମୋ ମଗଜକୁ ମାଡ଼ି ଆସିଲା, ମାନେ ମଣିଷର ମଗଜକୁ । ମୋର ସଚେତନ ମନ ଭୟରେ ଶିହରି ଉଠିଲା । ସେହି ଦଳ ସହ ହୁଡ଼ ମୁଡ଼ କରି ଧାଉଁଥିଲେ ସୁଦ୍ଧା, ଶେଷରେ ମୋର ସକଳ ମାନସିକ ସାହସ ଓ ଇଚ୍ଛା ଶକ୍ତି ପ୍ରୟୋଗ କଲି ।

ଅବିକଳ ଜଣେ ଲରୀ-ଚାଳକ ପରି ମୋ ମଗଜର ଲରୀକୁ ମୁଁ ସିଧା ନଦୀ ଆଡ଼କୁ ଘୂରାଇଦେଲି । ହଠାତ୍ ପାଣି ଚଉଦିଗକୁ ଛିଟିକି ପଡ଼ିଲା । ତାପରେ ସବୁ କିଛି ଚୁପ୍‌ଚାପ । ମୋ ହାତୀର ରକ୍ତ ପାଣିରେ



Digitized by srujan ka@gmail.com

ଶୀତଳ ହୋଇଗଲା । ସୁତରାଂ ମୋ ମଗଜର ଜୟ ହେଲା । ମୋ ଇଚ୍ଛା ମାନି ଏକ୍ଷଣି ମୋ ପାଦଗୁଡ଼ିକ ନଦୀର ପଙ୍କରେ ପାହୁଲ ପକାଇ ଚାଲିଥିଲେ ।

ତହୁଁ ମୁଁ ଠିକ୍ କଲି, ଜଳହାତୀ ପରି ମୋର ସମୁଦାୟ ଶରୀରଟା ପାଣି ଭିତରେ ବୁଡ଼ାଇ ରଖିବି ! ନିହାତି ଶୁଣ୍ଢ ଅଗରେ ନିଃଶ୍ୱାସ ନେବି । ସତରେ ସେୟା କଲି । କିନ୍ତୁ ମୋ ଆଖି କାନରେ ପାଣି ପଶି ଯାଉଥିଲା । ରହି ରହି ମଥା ଟେକି ଶୁଣିବାକୁ ଚେଷ୍ଟା କରୁଥିଲି । ଶିକାରୀମାନେ ଖୁବ୍ ପାଖକୁ ଆସି ଯାଇଥିଲେ । ପୁଣି ମୁଁ ବୁଡ଼ିଗଲି । ଶେଷକୁ ମୋତେ ଦେଖି ନ ପାରି ଶିକାରୀମାନେ ଫେରିଗଲେ ।

ଅବିରାମ ଭୟ ଓ ଉତ୍ତେଜନା ହେତୁ ମୋ ସହିବା ଶକ୍ତିର ସୀମା ଟପି ଯାଇଥିଲା । ତହୁଁ ମୁଁ ଠିକ୍ କଲି, ଯାହା ହେଉ ପଛେ ଶିକାରୀମାନଙ୍କ ହାତରେ କଦାପି ଧରାଦେବି ନାହିଁ । କଙ୍ଗୋ ନଦୀରେ ପହଁରି ପହଁରି ଷ୍ଟାନଲୀପୁଲ ଓ ବମ୍‌ର ମଝିରେ ଥିବା କୌଣସି ଗୋଟିଏ ଖମାର କି କୋଠିରେ ଯାଇ ହାଜର ହେବି, ଆଉ ଲୋକଙ୍କୁ ବୁଝାଇଦେବି ଯେ ମୁଁ ବଣୁଆ ହାତୀ ନୁହେଁ, ଉପଯୁକ୍ତ ଶିକ୍ଷିତ ହାତୀ । ତାହା ହେଲେ ସେମାନେ ମୋତେ ମାରିବେ ନାହିଁ କି ଖେଦିବେ ନାହିଁ ।





Digitized by srujan ka@gmail.com

## ବାର

ଦେଖାଗଲା, ପ୍ରକୃତରେ ମୋ ଯୋଜନାଟିକୁ କାମରେ ଲଗାଇବା ସେତେ ସହଜ ନୁହେଁ । ତେଣୁ ଅବିଳମ୍ବେ କଙ୍ଗୋର ପ୍ରଧାନ ନଦୀ ପଥରେ ମୁଁ ଭାସି ଚାଲିଲି । ଦିନରେ କୂଳେ କୂଳେ, ଆଉ ରାତିରେ ମଝି ନଦୀରେ । ଏପରି ଭାବରେ ଯିବା ସତରେ ନିରାପଦ । ଦିନରେ ନଦୀର କୂଳେ କୂଳେ ନଉକା ଚଳାଚଳ କରୁଥିବାରୁ, ବଣୁଆ ଜାନୁଆରଗୁଡ଼ାକ କୂଳ ପାଖେ ପାଖେ ଯିବାକୁ ଡରନ୍ତି । ପ୍ରାୟ ମାସେ କାଳ ଏପରି ଚାଲିଲି । ସେହି ସମୟରେ କେବଳ ଥରେ ଦୂରରୁ ଗୋଟାଏ ସିଂହର ବିକଟାଳ ରଡ଼ି ଶୁଣିଥିଲି, ଆଉ ରାତିରେ ଗୋଟାଏ ଜଳହାତୀ ସହିତ ଧକା ଲାଗିଥିଲା । ଜଳହାତୀଟା ନାକଟା ଖାଲି ଉପରକୁ ବାହାର କରି ଜଳକେଳି କରୁଥିଲା । ମୋର ନଜର ନ ଥିଲା, ପହଁରିଲା ବେଳେ ଜାହାଜ ପରି ତାହା ସହିତ ଧକା ଲାଗିବାରୁ ସେହି ଜାନୁଆରଟା ପାଣିରେ ବୁଡ଼ିଯାଇ ଚେପଟା ମୁହଁରେ ମୋ ପେଟରେ ଥରକୁ ଥର ଘୁଷି ମାରିଲା । ମୁଁ ତୁରିତେ ଦୂରକୁ ପହଁରି ଚାଲିଗଲି ।

ଏପରି ଭାବରେ ପହଁରି ନିରାପଦରେ ଯାଇ ଲୁକୁଙ୍ଗାରେ ହାଜର ହେଲି । ସେଠାରେ ଗୋଟାଏ ବିଶାଳ ବେଲଜୀୟାନ କୋଠି ଥିବାର



Digitized by srujan ka@gmail.com



ଦେଖିଲି । ଭୋର ହେଉ ନ ହେଉଣୁ ମଥା ହଲାଉ ହଲାଉ ମୁଁ ବଣରୁ ସେଠାକୁ ଚାଲିଲି । କିନ୍ତୁ ସେଠାରେ କିଛି ସୁବିଧା ହେଲା ନାହିଁ । ଦୁଇଟା ବଡ଼ ଡଗୁଆଳି କୁକୁର ଭେଉ ଭେଉ ରଡ଼ି ଛାଡ଼ି ମୋତେ ଖେଦି ଆସିଲେ, ଆଉ ଜଣେ ଲୋକ ଘରକୁ ପଶି ଯାଇ ଦି ଥର ଗୁଳି ଲାଛିଲା । ତୃତୀୟ ଥରକୁ ଅପେକ୍ଷା ନ କରି ମୁଁ ପୁଣି ବଣ ଭିତରେ ପଶିଗଲି ।

ବି ଷୁ ବ ମଣ୍ଡଳରେ ରାତି ବେଶ୍ ଶୀତଳ । ତା ସାଙ୍ଗକୁ ସିର୍‌ସିର୍ ହାଉଆ । ଗଛଲତାଗୁଡ଼ାକ କଳା, କାଦୁଆ ମାଟି । କେତେ ଘଣ୍ଟା ଚାଲିଲା ପରେ ଗୋଟାଏ ନିଆଁ ଦେଖି ପାରିଲି । ପାଖ



Digitized by srujan ka@gmail.com

ଆଖିରେ ଗାଁ ଗଣ୍ଡା ନ ଥିଲା । ଟିକିଏ ଜୋରରେ ଆଗେଇଲି । ବଣ ସରିଗଲା । ସାମନାରେ ନୀଚା ଘାସଭୂମି । ପ୍ରାୟ ଅଧ କିଲୋମିଟର ଦୂରରେ ଗୋଟାଏ ପୁରୁଣା ଚିରା ତମ୍ବୁ ପଡ଼ିଥିଲା । ତା ସାମନାରେ ନିଆଁ ଜଳୁଥିଲା । ପାଖରେ ଦି ଜଣ ୟୁରୋପୀୟ ଲୋକ ଛିଡ଼ା ହୋଇଥିଲେ । ଆଉ ଜଣେ ଅଧା-ଲଙ୍ଗଳା ଦେଶୀ ଲୋକ ପଥର ପିତୁଳା ପରି ଦିଶୁଥିଲା । ନିଆଁ କତିକି ଆଗେଇଗଲି । ସେମାନେ ମୋତେ ଅନାଇବାରୁ ମୁଁ ପୋଷା ହାତୀ ଭଳି ଆଣ୍ଠୁ ମାଡ଼ି ବସି ପଡ଼ିଲି । ଟୋପି-ପିନ୍ଧା ବାଙ୍ଗରା ଲୋକଟି ମୋତେ ଗୁଳି କରିବା ଲାଗି ବନ୍ଧୁକଟାଏ ଟାଣି ଆଣିଲା । କିନ୍ତୁ ଦେଶୀ ଲୋକଟି ଖଣ୍ଡିଆ ଇଂରେଜୀରେ ତାହାକୁ ବାରଣ କଲା- ''ମାର ନାହିଁ, ଭଲ ହାତୀ, ପୋଷା ହାତୀ ।''

ଦେଶୀ ଲୋକଟି ମୋ କତିକି ଲାଗି ଆସିଲା । ତା ନାଁ ସ୍ୱେପୋ । ଗୋରା ଲୋକ ବାକାଲା ତାହାକୁ ଧମକାଇଲା- ''ହଟି ଯାଆ; ଗୁଳି କରିବି ।'' ଅପର ଡେଙ୍ଗା ରୋଗଣା ଲୋକ କକ୍ସ କହିଲା- ''ସ୍ୱେପୋ ଠିକ୍ କହିଛି । ଆମକୁ ମାଥାଡ଼ି ଯାଏ ଗୁଡ଼ାଏ ବାଟ ଯିବାକୁ ପଡ଼ିବ । ଏହି ପୋଷା ହାତୀଟିକୁ କାମରେ ଲଗାଇବାକୁ ହେବ । ଏଟା ଅଧ ଟନେ ଜିନିଷପତ୍ର ସହଜରେ ବୋହି ନେବ । ତିରିଶ କି ଚାଳିଶଟି କୁଲିର କାମ ମଧ୍ୟ ଏଟା ତୁଲାଇବ । ସେଥିରେ ଆମର ପଇସାଟିଏ ଲାଗିବ ନାହିଁ । ଆମ କାମ ସରିଗଲେ ଏଟାକୁ ମାରିଦେଲେ ଖାସା ଦାନ୍ତ ଦୁଇଟା ବି ଆମେ ପାଇବା ।''

ତହୁଁ ବାକାଲା ବନ୍ଧୁକଟି ନୁଆଁଇଲା ।

ସ୍ୱେପୋ ମୋତେ ନିଆଁ ପାଖକୁ ଯିବା ଲାଗି ଠାରି ଦେବାରୁ, ମୁଁ ଆଗ୍ରହରେ ତାହା ପାଳନ କଲି ।

''କଅଣ ବୋଲି ଏହାକୁ ଡାକିବା ? ମୋ ମତରେ ଟ୍ରୁଯେଣ୍ଟ ନାମଟା ଦେଲେ ଠିକ୍ ହେବ ନାହିଁ ?'' ବାକାଲା ପଚାରିଲା ।

ମୁଁ କକ୍ସ ଆଡ଼କୁ ଅନାଇଲି । ନୀଳ ଦେହ ଉପରେ ସେ ଖଣ୍ଡିଏ ନୀଳ ଜାମା ପିନ୍ଧିଥିଲା । ସେ ଭଙ୍ଗା ଗଳାରେ ଜବାବ ଦେଲା- ''ଭଲ କଥା । ଏଣିକି ତାହାକୁ ଟ୍ରୁଯେଣ୍ଟ ବୋଲି ଡାକିବା ।''



Digitized by srujan ka@gmail.com

ଏତିକି ବେଳେ ନିଆଁ କଡିରେ ଗଦାଏ ଚିରାଫଟା ଲୁଗାପଟା ଭିତରୁ ଜଣେ ଡେଙ୍ଗା ସୁପୁରୁଷ ଦି ହାତରେ ଭରା ଦେଇ ବାହାରି ଆସିଲା । ବରଫ ପରି ଧଳା ମୁଖର ଆଭାହୀନ ଆଖିରେ ମୋତେ ଅନାଇ ମୁରୁକି ମୁରୁକି ହସି ବ୍ରାଉନ କହିଲା- "ତିନି ଜଣ ଯାଯାବର ଲୋକଙ୍କ ସହିତ ଏବେ ଚାରି ନମ୍ବର ଜୁଟିଲା ।'' କହି ଦେଇ ସେ ତଳେ ଟଳି ପଡ଼ିଲା ।

ବାଙ୍ଗାଲା ଦେଶୀ ଲୋକଟିକୁ ହୁକୁମ ଦେଲା- ''ହାତୀଟାକୁ ନେଇ ଗୋଟାଏ ଗଛରେ ବାନ୍ଧି ଦେବୁ । ଦେଖିବୁ, ଯେମିତି ସେଟା କୁଆଡ଼େ ପଳାଇ ନ ଯାଏ ।''

ପର ଦିନ ସକାଳେ ମୋ ମୁନିବମାନଙ୍କୁ ଭଲ କରି ଦେଖିଲି । ଷ୍ଟେପୋକୁ ମୋତେ ସବୁଠୁଁ ବେଶି ଭଲ ଲାଗିଲା । ସେ ସବୁ ବେଳେ ହସଖୁସିରେ ରହୁଥିଲା । ସେ ବରାବର ଖୁବ୍ ଯତ୍ନରେ ମୋ କାନ, ଆଖି, ପାଦ, ଚମଡ଼ା ସବୁ ଧୋଇ ଦେଉଥିଲା । ସେ ମୋ ଲାଗି ବଣରୁ ଖୋଜି ଖୋଜି ମିଠା ସୁଆଦିଆ ଫଳମୂଳସବୁ ଆଣୁଥିଲା । ବ୍ରାଉନ ବେମାର ଥିବାରୁ ତାହାର ହାବ୍‌ଭାବ ଠିକ୍ ଜଣା ପଡୁ ନ ଥିଲା । ତେବେ ବାଙ୍ଗାଲା ଓ ଜନ୍‌ସଙ୍କୁ ମୋତେ ଆଦୌ ଭଲ ଲାଗୁ ନ ଥିଲା । ହୁଏତ ବାଙ୍ଗାଲା କୌଣସି ନାମଜାଦା ଇଂରେଜ ପରିବ୍ରାଜକଙ୍କୁ ଖୁନ୍ କରି ତା ଜାମାପଟା, ତମ୍ବୁ ଓ ବନ୍ଧୁକଟା ଯୋଗାଡ଼ କରିଥିଲା । ନୀଳ ଚେହେରାର ଜନ୍ସ ହେଲା ସ୍ୱଦେଶରୁ ବିତାଡ଼ିତ ଜଣେ ଇଂରେଜ । ତିନିହେଁ ହେଲେ ଡାକୁ । ସେମାନେ ହାତୀ ମାରି ତା ଦାନ୍ତକୁ ବେଆଇନ ଭାବରେ ବାହାରକୁ ଚାଲାଣ କରୁଥିଲେ । ଷ୍ଟେପୋ ସେମାନଙ୍କୁ ପଥ ଦେଖାଇ ନେଉଥିଲା । ବୟସ କମ ହେଲେ ସୁଦ୍ଧା ସେ ହାତୀ-ଶିକାରରେ ଓସ୍ତାଦ ଥିଲା । ସେ ତିନି ଡାକୁଙ୍କର ଡ଼ାହାଣ ହାତ ଭାବରେ ସବୁ କାମ ସହଜରେ କରି ଦେଉଥିଲା ।





Digitized by srujan ka@gmail.com

# ତେର

ବ୍ରାଉନ କେତେକ ପରିମାଣରେ ଆରୋଗ୍ୟ ହୋଇଥିଲେ ସୁଦ୍ଧା ହାତୀ-ଶିକାରରେ ଯିବା ଲାଗି ତାହାର ତାକତ ନ ଥିଲା । ତେଣୁ କକ୍ସ ଓ ବାକାଲା ମୋ ପିଠିରେ ଚଢ଼ି କିଛି ଦୂରକୁ ଗଲେ । ଆଗରୁ ଯେଉଁ ହାତୀଟି ମରା ହୋଇଥିଲା ତା ଦାନ୍ତ ସେମାନେ ଯୋଗାଡ଼ କରିବେ । ଉଭୟେ ଖୋଲାଖୋଲି କଥାଭାଷା ହେଉଥିଲେ । ସେମାନଙ୍କର ଧାରଣା, ଆଉ କେହି ସେମାନଙ୍କ କଥା ଶୁଣୁ ନାହାନ୍ତି । ସେମାନଙ୍କ ପକ୍ଷରେ ମୁଁ ତ ଗୋଟାଏ ସାମାନ୍ୟ ଭାରବାହୀ ପଶୁ ଥିଲି ।

ସେମାନଙ୍କ କଥୋପକଥନରୁ ଜଣା ପଡ଼ିଲା, ହାତୀ-ଦାନ୍ତର ଦାମରୁ ବ୍ରାଉନ ଓ ଏ ଦୁହେଁ ତିନି ଭାଗ ପାଇବେ । ୱେପୋକୁ ବି ଗୋଟାଏ ଭାଗ ଦେବାକୁ ପଡ଼ିବ । ତେବେ ଏବେ ବ୍ୟବସାୟରେ ସେତେ ମୁନାଫା ନାହିଁ । ଦି ଉକମ ହାତୀ-ଦାନ୍ତ ଅଛି । ଗୋଟାଏ ହେଲା ମିଲା ହାତୀର ନରମ ଦାନ୍ତ, ଆଉ ଅନ୍ୟଟି ଜୀଅନ୍ତା ହାତୀର ଟାଣ ଦାନ୍ତ । କିନ୍ତୁ ଏଠା ହାତୀ-ଦାନ୍ତରୁ ଅଧିକ ଦାମ ମିଳିବ ନାହିଁ । ଚାରି ଜଣ ଶିକାର କରି, ଲାଭକୁ ଦି ଭାଗ କରି ଦି ଜଣ ନେଲେ କିଛି ଆଶାଜନକ ଟଙ୍କା ମିଳିବ । ବ୍ରାଉନ ତ ଦି ଦିନ ଭିତରେ ଭଲ ହୋଇଗଲେ, ତାହାକୁ



Digitized by srujan ka@gmail.com

ଆଡ଼େଇ ଦେଇ ହେବ ନାହିଁ । ତେଣେ ଅନାଇ ରହିଛି ବାନର ପରି ଚତୁର ସ୍ୱେପୋ ; ରାତିରେ ଉଭୟଙ୍କୁ ଖତମ କରିଦେଲେ ଭାରି ଭଲ ହେବ । ପହିଲେ ସେମାନଙ୍କୁ ପ୍ରଚୁର ମଦ ଖୁଆଇ ମାତାଲ କରିବାକୁ ପଡ଼ିବ ।

ଗୋଟାଏ ବିଶାଳ ଗାତ ଭିତରେ ଅଭାଗା ହାତୀଟା ପଡ଼ିଥିଲା । ତିନି ଦିନ ତଳେ ମୁନିଆ ଖୁଣ୍ଟିରେ ତା ପେଟ ଫୁଟି ଯାଇଥିଲା । ତଥାପି ସେଟା ଜୀଇଥିଲା । ବାକାଲା ଗୋଟାଏ ଗୁଳିରେ ତାହାକୁ ଖତମ କରି ଦେଲା । ତା ପରେ ଉଭୟେ ଗାତ ଭିତରକୁ ପଶି ଗଲେ । ହାତୀର ଦାନ୍ତ ଖସାଇବାକୁ ଦିନଟାଏ ଲାଗିଲା । ରବି ଆକାଶରେ ବୁଡି ଗଲା ବେଳେ ସେମାନେ ମୋ ପିଠି ଉପରେ ଦାନ୍ତ ଲଦି ଛାଉଣିକୁ ଫେରି ଆସିଲେ ।

ବ୍ରାଉନଙ୍କୁ ଛାଉଣିରେ ନ ପାଇ ସେମାନେ ହତାଶ ହେଲେ । ସ୍ୱେପୋ ଜଣାଇଲା- ବ୍ରାଉନ୍ ଟିକିଏ ସୁସ୍ଥ ବୋଧ କରିବାରୁ ଶିକାରକୁ ବାହାରିଗଲେ, ହୁଏତ ଆଜି ରାତିରେ ସେ ଫେରିବେ ନାହିଁ ।

ପର ଦିନ ଭୋର ବେଳେ ବାକାଲା ଓ କକ୍ସଙ୍କ ନିଦ ଭାଙ୍ଗି ନ ଥିଲା । ବ୍ରାଉନ ଛାଉଣିକୁ ଫେରିଆସି ସ୍ୱେପୋର କାନ୍ଧରେ ହାତ ମାରିଲା । ସେ ପହରା ଦେଉଥିଲା, ଟିକିଏ ମୁରୁକି ମୁରୁକି ହସିଲା । ବ୍ରାଉନ ତାହାକୁ ଠାରରେ ମୋ ପାଖକୁ ନେଇଆସି ମୋ ପିଠିରେ ବସିବାକୁ କହିଲା । ଉଭୟେ ମୋ ପିଠିରେ ବସିଲେ । ମୁଁ ସେମାନଙ୍କୁ ପ୍ରାୟ ବଣର ସୀମା ନିକଟକୁ ନେଇଗଲି ।

ବ୍ରାଉନ ମୋତେ କହିଲା- "କାଲି ରାତିରେ ମୁଁ ଗୋଟାଏ ପ୍ରକାଣ୍ଡ ଦନ୍ତା ହାତୀକୁ ମାରିଛି । ଚାଲ, ତା ଦାନ୍ତ ଉପାଡ଼ିବାକୁ ମୋତେ ସାହାଯ୍ୟ କରିବ । ଦାନ୍ତ ଦେଖି ବାକାଲା ଓ କକ୍ସ ଏକାବେଳେ ଅବାକ ହୋଇଯିବେ ।"

ଖରାରେ ଦେଖିଲି, ନଦୀ କୂଳରେ ଗୋଟାଏ ବୁଦା ଭିତରେ ହାତୀଟ ଫୁଲିଲା ଲାସଟା ଚାରି କାତ ମେଲାଇ ପଡ଼ିଛି ।



Digitized by srujan ka@gmail.com

ଦାନ୍ତ ଉପୁଡ଼ା ସରିଲାରୁ ମୁଁ ସେମାନଙ୍କୁ ନେଇ ଛାଉଣି ଆଡ଼େ ମୁହାଁଇଲି । କିନ୍ତୁ ତତ୍‌କ୍ଷଣାତ ମୋର ମନେ ପଡ଼ିଲା, ବ୍ରାଉନ ଓ ସ୍ୱେପୋ ସହିତ ମୋତେ ବି ଅଚିରେ ମରଣ ବରଣ କରିବାକୁ ହେବ । ତହୁଁ ମୁହଁ ବୁଲାଇ ମୁଁ ସିଧା କଙ୍ଗୋ ନଦୀ ଆଡେ ଚାଲିଲି । ଏହା ଦେଖି ବ୍ରାଉନ ମୋ ଦେହରେ ଖୁବ୍ ଜୋରରେ ଧାରୁଆ ଲୁହା ଆଙ୍କୁଶିରେ ଖୋଞ୍ଚିବାକୁ ଲାଗିଲା । ସ୍ୱେପୋ ଏହା ନ କରିବାକୁ ବ୍ରାଉନକୁ ଅନୁରୋଧ କରୁଥିଲା । ମୋତେ ବୁଝାଇବା ଲାଗି ସ୍ୱେପୋ ନିଜ ଭାଷାରେ ଅତି ଆଦରରେ ମୋତେ ସାନ୍ତ୍ୱନା ଦେଲା । ମୁଁ ତା କଥା ବେଶ୍ ବୁଝି ପାରିଲି ।

ଏତିକି ବେଳେ ବ୍ରାଉନ ରଡ଼ି ଛାଡ଼ିଲା- "ମୁଁ ଏଟାକୁ ମାରି ଖତମ କରିଦେବି । ଯଦି ବୁୟେଣ୍ଟ ମାଲପତ୍ର ବୋହିବା ନ ହାର୍କେ ତାହା ହେଲେ ତାହାର ଦାନ୍ତ ଦୁଇଟା ଛଡା ଆମର ଆଉ କି ଦରକାର ଅଛି ? ସେ ଏକ୍ଷଣି ଆମ ଠାରୁ ଖସିଯିବାକୁ ବସିଛି । ତାହା କଦାପି ହେଇ ପାରିବ ନାହିଁ । ରହ, ତା ଆଗରୁ ତା ଆଖି କାନର ମଝିରେ ଗୋଟାଏ ଗୁଳି ବସାଇ ଦେଉଛି ।"

କଥାଟା ଶୁଣି ମୁଁ ଶିହରି ଉଠିଲି । ମୋତେ ନ ମାରିବାକୁ ସ୍ୱେପୋ ବ୍ରାଉନକୁ ମିନତି କଲା । ତଥାପି ବ୍ରାଉନ କାନ୍ଧରୁ ବନ୍ଧୁକଟା ଟାଣି ନେବାର ଜାଣି, ଶେଷରେ ମୁଁ ଛାଉଣି ଆଡ଼େ ଫେରିଲି ।

ବ୍ରାଉନ ହସି ହସି କହିଲା- "ଦେଖିଲ, ହାତୀଟା ମଣିଷର ଭାଷା ବୁଝି ପାରିଲା ।"

ମୁଁ ବାଧ ହୋଇ କେତେ ପାଦ ଆଗେଇ ଯାଇ ଚଟାପଟ ବ୍ରାଉନକୁ ଶୁଣ୍ଢରେ ଓଟାରି ନେଇ ତଳେ ପକାଇଦେଲି । ତା ପରେ ସ୍ୱେପୋକୁ ପିଠିରେ ବସାଇ ବଣ ଆଡେ ଦ୍ରୁତ ଗତିରେ ଧାଇଁଲି । ବ୍ରାଉନ ରଡ଼ି ଛାଡ଼ିଲା, ମୋତେ ଗାଳିଗୁଲଜ କଲା । ସତରେ ସେ ବିଶେଷ ଜଖମ ହୋଇ ନ ଥିଲା, କିନ୍ତୁ ଅସୁଖ ହେତୁ ସେ ଦୁର୍ବଳ ହୋଇଥିବାରୁ ସହସା ଉଠି ଠିଆ ହୋଇ ପାରିଲା ନାହିଁ । ସେହି ସୁଯୋଗରେ ମୁଁ ବଣ ଭିତରକୁ



Digitized by srujan ka@gmail.com

ପଶିଗଲି । ଏଣେ ସ୍ପେପୋ ଛାଉଣିରେ ଲୋକଙ୍କ ସହିତ ରହିବାକୁ ଚାହୁଁଥିଲା । କାରଣ କେତେ ମାସ ହେଲା ହାତୀ ଶିକାର ବାବଦକୁ ସେହି ଲୋକଙ୍କ ଉପରେ ତାହାର କିଛି ପାଉଣା ବାକି ଥିଲା । ମୁଁ ବଣ ଭିତରେ ଯାଉଥିଲା ବେଳେ ସେ ହଠାତ୍ ଗୋଟିଏ ଡାଳ ଧରି ପକାଇ ଗଛର ଅତି ଉପରକୁ ଉଠିଗଲା । ଗଛ ତଳେ ଠିଆ ହୋଇଥିଲା ବେଳେ, ଗନ୍ଧରୁ ବାରି ପାରିଲି ଯେ ବ୍ରାଉନ ଚୁପି ଚୁପି ମୋ ପଛେ ପଛେ ଚାଲି ଆସୁଛି । ସେ ଗୁଳି ଚାଳିବା ଆଗରୁ ମୁଁ ବଣ ଭିତରକୁ ପଶିଗଲି । କିଛି ସମୟ ଅପେକ୍ଷା କରି ମୁଁ ଫେରନ୍ତା ପଥ ଧରିଲି । ଅନ୍ୟ ବାଟେ ଯାଇ ସେମାନଙ୍କ ଆଗରୁ ମୁଁ ଛାଉଣିରେ ହାଜର ହେଲି । ବାକାଲା ଓ କକ୍ସ ମୋତେ ଆରୋହୀହୀନ ଦେଖି ଖୁବ୍ ଅବାକ ହେଲେ ।

ସେମାନେ ଆନନ୍ଦରେ ଉଛୁଳୁଥିଲା ବେଳେ ବ୍ରାଉନ ଓ ସ୍ପେପୋ ମୋତେ ଗାଳିଗୁଲଜ ଦେଇ ଦେଇ ଛାଉଣିରେ ଆସି ହାଜର ହେଲେ । ମୋତେ ଦେଖି ବ୍ରାଉନ୍ ଭାରି ବିରକ୍ତ ହେଲା । ସେହି ସମୟରେ ସେ ମୋତେ ମାରିଦେବାକୁ ସେମାନଙ୍କର ମତ ଲୋଡ଼ିଲା । କିନ୍ତୁ ବାକାଲା ଓ କକ୍ସ ପ୍ରସ୍ତାବଟି ହସରେ ଉଡ଼ାଇ ଦେଇ କହିଲେ- "ଯାହା ହେଉ, ବ୍ରାଉନ୍ ଭଲ ହେଉଁ ନିରାପଦରେ ଛାଉଣିକୁ ଫେରି ଆସିଛି, ଆଉ ଯୋଡ଼ାଏ ଚମତ୍କାର ହାତୀ-ଦାନ୍ତ ବି ଆଣିଛି ।"



ଅଷ୍ଟାଦଶ ଅଧ୍ୟାୟ

Digitized by srujan ka@gmail.com

## ଚଉଦ

ରାତିରେ ସଭିଏଁ ସହଜ ଶୋଇ ପଡ଼ିଲେ । କବ୍ବର ପହରା ଦେବାର ପାଳି ଥିଲା । ବାକାଲା କମ୍ବଳ ତଳେ ଶୋଇ କଡ଼ ଲେଉଟାଉଥିଲା । କେତେ ଥର ସେ କବ୍ବ ଆଡ଼େ ଅନାଇଲା । ସେ ମଥା ହଲାଇ ବୁଝାଇଲା, ଏକ୍ଷଣି ସମୟ ହୋଇ ନାହିଁ ।

ବଣର ସେ ପଟେ କୃଷ୍ଣ ପକ୍ଷର ଚାନ୍ଦ ଯୋଗୁଁ ଫାଙ୍କା ଜାଗାରେ ଟିକିଏ ଛାଇଆଲୁଅ ଦିଶିଲା । ଟ୍ୱିକି ପିଲାର କାନ୍ଦଣା ପରି ଗୋଟାଏ କରୁଣ ଚିତ୍କାର ଶୁଭିଲା । ହୁଏତ ବଡ଼ ଜାନୁଆର ଗୋଟାଏ ଛୋଟ ଜୀବକୁ ଧରିଥିଲା । କବ୍ବ ମଥା ହଲାଇ ବାକାଲାକୁ ଠାରି ଦେଲା । ସେ ସଜାଗ ଥିବାରୁ ତୁରିତେ ଉଠି ପଡ଼ି ଛିଡ଼ା ହେଲା, ଆଉ ରିଭଲବାରଟା କାଢ଼ିବା ଲାଗି ପଛ ପକେଟ ଅଣ୍ଡାଳିଲା । ଶତ୍ରୁକୁ ଭୟ ଦେଖାଇବା ମତଲବରେ ମୁଁ ବି ଶୁଣ୍ଢଟା ମାଟିରେ ଘଷି ଘଷି ଜୋରରେ ରଡ଼ି ଛାଡ଼ିଲି । ଗୋଟାଏ ଅଜବ ଭୟଙ୍କର ଶବ୍ଦ ବାହାରିଲା ।

ମଥା ଟେକି ବ୍ରାଉନ ପଚାରିଲା- ''କିଏ ରେ ବଦମାସ, ଏତେ ଜୋରରେ ତୂରୀ ବଜାଇଲା ?'' ବାକାଲା ଚଟ୍ କରି ମାଟିରେ ବସି ପଡ଼ିଲା ।



Digitized by srujan ka@gmail.com

ବ୍ରାଉନ ପଚାରିଲା- "ତୋର ଫେର୍ କଅଣ ହେଲା ? ନାଚିବୁ କି ?"

ବାକାଲା ଜବାବ ଦେଲା- "ଏହି ହତଭାଗା ହାତୀଟା ମୋ ନିଦ ଭାଙ୍ଗିଦେଲା । ଯାଉଛୁ ନା ଏଠୁ !"

କିନ୍ତୁ ମୁଁ ସେଠାରୁ ପାଦେ ହେଲେ ହଟିଲି ନାହିଁ। କିଛି ସମୟ ପରେ ବ୍ରାଉନ ଫେର୍ ଶୋଇ ପଡ଼ିଲା । ସେତିକି ବେଳେ ମୁଁ ପୁଣି ସେଇପରି ରଡ଼ି ଛାଡ଼ିଲି । କକ୍ସ ଏକାବେଳେ ବ୍ରାଉନ ପାଖରେ ଆସି ହାଜର ହୋଇଯାଇଥିଲା । ବନ୍ଧୁକ ବି ପ୍ରସ୍ତୁତ । ଠିକ୍ ସେତିକି ବେଳେ ମୁଁ ପୁଣି ଜୋରରେ ସେଯା କଲି । ବ୍ରାଉନ ମୋ ପାଖକୁ କୁଦି ଆସିଲା, ମୋ ଶୁଣ୍ଢ ଅଗରେ ଜୋରରେ ଗୋଟାଏ ଥାପଡ଼ କଷିଦେଲା । ମୁଁ ତତ୍‌କ୍ଷଣାତ ଶୁଣ୍ଢଟା ଘୋଷାଡ଼ି ଆଣିଲି ।

ବ୍ରାଉନ ବଡ଼ ପାଟିରେ କହିଲା- "ହତଭାଗା ଜାନୁଆରଟାକୁ ଏକ୍ଷଣି ଖୁନ୍ କରିବି । ଏଟା ହାତୀ ନୁହେଁ, ଗୋଟାଏ ପିଶାଚ । ସ୍ୱେପୋ, ଏଟାକୁ ଗୋଟାଏ ଜଳାଶୟ ଆଡ଼କୁ ଖେଦି ନେଇ ଯାଆତ ! ଆରେ, ବନ୍ଧୁକଟାରେ ଫେର୍ କଅଣ କରୁଛୁ ?"

"ଭାବୁଥିଲି, ଗୋଟେ ଦିଇଟା ଗୁଳି ଲାଛି ବ୍ରୁଯେଣ୍ଟକୁ ଏଠୁ ହଟାଇ ଦେବି ।"

ବ୍ରାଉନ ଫେର୍ ନିଦରେ ଶୋଇ ପଡ଼ିଲା । ମୁଁ କେତେ ପାଦ ଆଗେଇ ଯାଇ ଛାଉଣି ଉପରେ ନଜର ରଖିଲି ।

କକ୍ସ ମୋତେ ଘୁଷି ଦେଖାଇ ପାଟି କଲା- "ବଦମାସ ହାତୀ !"

"କୌଣସି ଗୋଟାଏ ବଣୁଆ ଜାନୁଆରର ଗନ୍ଧ ସେ ପାଇଛି"- ସ୍ୱେପୋ କହିଲା । ସେ ମୋତେ ସମର୍ଥନ କରିବାକୁ ଚେଷ୍ଟା କରୁଥିଲା ।

ପ୍ରାୟ ସକାଳ ହୋଇ ଆସିଲା ବେଳକୁ କକ୍ସ ବାକାଲାକୁ ଠାରି ଦେଲା । ସେମାନେ ଦ୍ରୁତ ଧାଇଁଗଲେ- କକ୍ସ ବ୍ରାଉନ ପାଖକୁ, ଆଉ ବାକାଲା ସ୍ୱେପୋ ପାଖକୁ । ଏକା ସାଙ୍ଗରେ ସେମାନେ ଗୁଳି ଫୁଟାଇଲେ । ସ୍ୱେପୋ କରୁଣ ଚିତ୍କାର କଲା, ଉଠି ପଡ଼ି ଠିଆ ହୋଇ



Digitized by srujan ka@gmail.com

ଥରି ଥରି ପୁଣି ତଳେ ପଡିଗଲା । ତା ପାଦ ଦୁଇଟା ଛଟପଟ ହେଲା । କିନ୍ତୁ ବ୍ରାଉନର ପାଟିରୁ କିଛି ଶବ୍ଦ ବାହାରିଲା ନାହିଁ । ସମୁଦାୟ ଘଟଣାଟା ଆଖି ପଲକରେ ଏପରି ଅଚାନକ ଘଟିଗଲା ଯେ ମୁଁ ହତଭାଗା ଦୁହିଁଙ୍କୁ ହୁସିଆର କରି ଦେବାକୁ ଆଦୌ ସମୟ ପାଇଲି ନାହିଁ ।

କିନ୍ତୁ ସେତେବେଳକୁ ବ୍ରାଉନ ମରି ନ ଥିଲା । କଙ୍କ ତା ଉପରେ ନଇଁ ପଡ଼ିବାରୁ ସେ ହଠାତ୍ ଡାହାଣ କହୁଣିରେ ଭରା ଦେଇ ଗୁଳି ଛାଡ଼ିଲା । କଙ୍କ ତତ୍‌କ୍ଷଣାତ ମାଟିରେ ଟଳି ପଡ଼ିଲା । ବ୍ରାଉନ ତା ପଛରୁ ବାକାଲାକୁ ଥରେ ଗୁଳି କରି ପଳାଇବାକୁ ବସିଲା । କିନ୍ତୁ କେତେ ପାଦ ଯାଉ ନ ଯାଉଣୁ ସେ ଗୋଟାଏ ଜାଗାରେ ଚକ୍କର ଖାଇ ମାଟିରେ ପଡିଗଲା । ତା ପରେ ଦୀର୍ଘ ନିଶ୍ୱାସ ଛାଡ଼ି ସେ ଧରାଶାୟୀ ହେଲା । ଚଉଦିଗ ନୀରବ, ପବନରେ ଗୋଟାଏ ରକ୍ତର ଗନ୍ଧ ଭରିଗଲା । ମୁଁ ତା ପାଖକୁ ଯାଇ ତାହାକୁ ଭଲ କରି ଅନାଇଲି । ତା ଆଖି ଦୁଇଟା ଝାପ୍‌ସା ଦିଶୁଥିଲା । ସେ ଟିକିଏ ମଥା ଟେକି ଫେର୍ ଗୁଳି ଛାଡ଼ିଲା । ଗୁଳିଟା ମୋ ସାମନା ଡାହାଣ ପାଦର ଚମଡ଼ା ଘଷି ଚାଲିଗଲା ।





Digitized by srujan ka@gmail.com

## ପନ୍ଦର

ମା ଥାଡ଼ିରେ ପହଞ୍ଚିଲାରୁ ମୋର କପାଳ ପହିଲେ ଫିଟିଲା।

ଗୋଧୂଳି ବେଳା। ସାଗର ଓ କଙ୍ଗୋ ଅବବାହିକାର ମଝିରେ ପର୍ବତ ମାଳାର ପଛରେ ରବି ଗଗନରେ ବୁଡି ଯାଉଥିଲେ। ନଦୀଠୁଁ ଅଳପ ଦୂରରେ ବଣ ଭିତରେ ମୁଁ ମନେ ମନେ ଭାବୁଥିଲି, କାହିଁକି ବା ମୁଁ ହାତୀ ପଲ ସାଙ୍ଗରେ ନ ଗଲି। ଯାଇଥିଲେ ଆଜି ମୋତେ ଏପରି ଫେରାରୀ ଆସାମୀ ଭଳି ଘୂରି ବୁଲିବାକୁ ପଡି ନ ଥାଆନ୍ତା। ମୋ ଡାହାଣ ପଟେ ବଣର ଫାଙ୍କରେ ନଦୀ ନାଳି ହୋଇ ଜଳୁଥିବାର ଦିଶୁଥିଲା। ବାମ ପଟେ ବଡ଼ ବଡ଼ ରବର ଗଛ। ତା ଛାଲସବୁ କଟା ଯାଇଛି। ମାଲୁମ ହେଲା, ନିଶ୍ଚୟ ନିକଟରେ ଲୋକବାକ ଅଛନ୍ତି।

ଆହୁରି କେତେ ଶହ ମୀଟର ଆଗେଇ ଯିବାକୁ ମାନିଓକରେ ହାଜର ହେଲି। କଦଳି, ସପୁରୀ, ଆଖୁ, ଯବ, ତମାଖୁର ଖେତସବୁ। ଆଖୁ ଓ ତମାଖୁ ଖେତର ମଝିରେ ମଝିରେ ବାଟ କାଟି ମୁଁ ଅତି ହୁସିଆରିରେ ଚାଲିଲି। ଗୋଟିଏ ଖୋଲା ପଡ଼ିଆ ପଡ଼ିଲା। ତା ମଝିରେ ଗୋଟିଏ ଘର। ଆଖପାଖରେ କୌଣସି ଲୋକର ଦେଖା ମିଳିଲା ନାହିଁ। ଖାଲି କିଛି ଦୂରରେ ଗୋଟିଏ ପୁଅ ଓ ଝିଅଟିଏ ଖେଳୁଥିଲେ।



Digitized by srujan ka@gmail.com

ସେମାନେ ପଡ଼ିଆରେ ମୋତେ ଦେଖି ପାରି ନ ଥିଲେ। ମୁଁ ପଛ ଗୋଡ଼ରେ ଛିଡ଼ା ହୋଇ କେତେକ ମଜାଦାର ଶବ୍ଦ କରି ନାଚିବାକୁ ଲାଗିଲି। ମୋ ଉପରେ ନଜର ପଡ଼ିଲା କ୍ଷଣି ସେମାନେ ଆବାକାବା ହେଲେ। ସେମାନେ ଅବଶ୍ୟ ପଳାଇ ଗଲେ ନାହିଁ। ସେଥିକି ମୁଁ ଖୁବ୍ ଖୁସି ହେଲି। ନାନା ରକମ ମଜାଳିଆ ଖେଳସବୁ ଦେଖାଇବାକୁ ଲାଗିଲି। ପୁଅ ପିଲାଟି ପହିଲେ ହସରେ ଫାଟି ପଡ଼ିଲା। ଝିଅଟି ହାତତାଳି ଦେବାକୁ ଲାଗିଲା। ମୁଁ ନାଚ-କୁଦରେ ମାତିଲି।

ଧୀରେ ଧୀରେ ସାହସ ଧରି ସେମାନେ ମୋ ପାଖକୁ ଲାଗି ଆସିଲେ। ଶେଷକୁ ମୁଁ ଶୁଣ୍ଢ ବଢ଼ାଇ ପୁଅ ପିଲାଟିକୁ ଝୁଲାଇବାକୁ ଡାକିଲି। ସେ ଟିକିଏ ଥତମତ ହୋଇ ମୋ ବଙ୍କା ଶୁଣ୍ଢ ଉପରେ ବସି ଝୁଲିବାକୁ ଲାଗିଲା। ଝିଅଟିକୁ ବି ଟିକିଏ ଝୁଲାଇଲି। ମୁଁ ଆନନ୍ଦରେ ଉଛୁଳି ପଡ଼ି ସେମାନଙ୍କ ସହିତ ଖେଳାଖେଳିରେ ଏକାବେଳେ ବିଭୋର ହୋଇଗଲି। ମୁଁ ଦେଖି ପାରି ନ ଥିଲି, କେତେ ବେଳୁ ଜଣେ ଡେଙ୍ଗା ରୋଗଣା ଲୋକ ଆସି ଆମ ପାଖରେ ଛିଡ଼ା ହେଲାଣି। ଦେହର ରଙ୍ଗ ହଳଦିଆ, ଆଖି କୋଟରକୁ ପଶି ଯାଇଛି। ହୁଏତ ଲୋକଟି ାବେ ଜରରୁ ଉଠିଛି। ସେ ଭୀଷଣ ଅବାକ ହୋଇ ଠିଆ ଠିଆ ମୋ ଖେଳ ଦେଖୁଥିଲା।

ତାହାକୁ ଦେଖି ପାରି ପୁଅଟି ପହିଲେ ଚିତ୍କାର କଲା- ''ବାବା, ଦେଖ, ଆମେ କେମିତି ଗୋଟାଏ ହେଟୀ-ଟେଟୀ ପାଇଛୁ।''

''ଏଁ, ହେଟୀ-ଟେଟୀ!'' ଲୋକଟି ଭଙ୍ଗା ଗଳାରେ ଆଉଡ଼ାଇଲା। ସେ ବି ପାଖରେ ହାତ ଝୁଲାଇ ଠିଆ ହୋଇ ରହିଲା। ସେ ବୁଝି ପାରୁ ନ ଥିଲା, କଅଣ କରିବ। ମୁଁ ତାହାକୁ ସବିନୟରେ ଅଭିବାଦନ ଜଣାଇଲି, ଆଣ୍ଠୁ ମାଡ଼ି ବସି ପଡ଼ିଲି। ଲୋକଟି ମୋ ଶୁଣ୍ଢରେ ହାତ ବୁଲାଇ ଦେଇ ହସିଲା।

''ତାହା ହେଲେ ମୁଁ ଜିତିଗଲି''- ଅତି ହରଷ ଚିତ୍ତରେ ମୁଁ କହି ...ବଲି।



Digitized by srujan ka@gmail.com



ହାତୀର କାହାଣୀ ଏତିକିରେ ସରିଲା । ସତରେ କହିବାକୁ ଗଲେ, ଏଇଠି ସେହି କାହାଣୀ ଶେଷ ହେବା ଉଚିତ, କାରଣ ପରେ ତାହାର କଅଣ ହେଲା ସେଟା ସେତେ କୌତୂହଳଜନକ ଘଟଣା ନୁହେ ।

ଯାହା ହେଉ, ଅଧ୍ୟାପକ ଭାଗନାର, ସହକାରୀ ଦେନିସଭ ଓ ହାତୀ ହେିଟୀ-ଟେିଟୀ ସୁରଜରଲାଣ୍ଡରେ ଭଲ କରି ଘୂରି ବୁଲିଲେ ।

ଭେଭେ ମୂଲକରେ ହାତୀକୁ ବୁଲୁଥିବାର ଦେଖି ପର୍ଯ୍ୟଟକମାନେ ଅବାକ୍ ହେଲେ । ଆଗରୁ ବୈଜ୍ଞାନିକ ରିଙ୍ଗ ଏହି ମୂଲକକୁ ଖୁବ୍ ପସନ୍ଦ କରୁଥିଲେ । ବେଳେ ବେଳେ ସେ ହ୍ରଦରେ ଗାଧୋଉଥିଲେ । କିନ୍ତୁ ସେହି ବର୍ଷ ଶୀତ ଟିକିଏ ସହଳ ପଡ଼ିଗଲାରୁ, ପର୍ଯ୍ୟଟକମାନେ ଗୋଟିଏ ମାଲଗାଡ଼ିରେ ବର୍ଲିନକୁ ଫେରିଗଲେ ।



Digitized by srujan ka@gmail.com

ହାତୀ ହେିଟୀ-ଟେିଟୀ ଏବେ ବୁଶ୍ ସର୍କସରେ ଖେଳ ଦେଖାଉଛି । ସେ ସତ୍ ଉପାୟରେ ବର୍ଷ ଯାକ ନିଜର ଖାଦ୍ୟ ଯୋଗାଡ଼ କରୁଛି । ଖାଲି ସେତିକି ନୁହେ, ସେ ସବୁ ଦେଶୀ ବିଦେଶୀ ଲୋକଙ୍କୁ ଅବାକ କରି ଦେଉଛି । ଏହି 'ହାତୀ ପ୍ରତିଭା'କୁ ଖାଲି ଥରେ ଦେଖିବା ଲାଗି ପର୍ଯ୍ୟଟକମାନେ ଛୁଟିଆସନ୍ତି । ଏହାର ଅଲୌକିକ ପ୍ରତିଭା ଉପରେ ବୈଜ୍ଞାନିକମାନେ ଗବେଷଣା ଚଳାଇଛନ୍ତି । କେହି କହୁଛି ବୃକ୍ଷ ବନ୍ଦନ [illegible] ତ କେହି କହୁଛି ଏସବୁ ଜୋଚ୍ଚୋରି ଭଣ୍ଡାମି ।

ମାହୁନ୍ତ ଯୁଙ୍ଗ [illegible] ହାତୀର [illegible] ନିଏ । କିନ୍ତୁ ସତରେ ସେ [illegible] ହେିଟୀ [illegible] ଦୂରେ, ଥାଉ ମନେ ମନେ ଭାବେ [illegible] ନିଶ୍ଚୟ [illegible] କିଛି ନା କିଛି ଭୌତିକ [illegible] । ହାତୀ ନିତି [illegible] କାଗଜ [illegible] ଦିନେ [illegible] ପଞ୍ଜରରୁ ଖୁବ୍ ଚାଲାକିରେ ତାଆସ ମୁଣ୍ଡାଏ କାଢ଼ି [illegible] ଉପରେ ବସି ଏକ ମନରେ ତାଆସ [illegible] ପାଇଁ ଏ କଥା ଅବଶ୍ୟ [illegible] କହି ନାହିଁ ।

'ସହକାରୀ ଦେନିସଭ ଦ୍ୱାରା ଲିଖିତ ପାଣ୍ଡୁଲିପିଟି ପଢ଼ି ଅଧ୍ୟାପକ ଭାଗନାର ନିଜର ଅଭିମତ ସେଥିରେ ଯୋଗ କରିଥିଲେ-

"ସତରେ ଏସବୁ ଘଟିଥିଲା । ଅନୁରୋଧ ଯେ, ଏହି ଲେଖାଟି ଜର୍ମାନ ଭାଷାରେ ଅନୁବାଦ କରା ନ ଯାଉ । କାରଣ ବୈଜ୍ଞାନିକ ରିଙ୍ଗଙ୍କ ପାଖଆଖ ଲୋକଙ୍କ ଠାରୁ ତାଙ୍କର ଅଲୌକିକ ରହସ୍ୟ ଗୋପନ ରଖିବା ଉଚିତ ।"

(୩୧ ଅକ୍ଟୋବର, ୧୯୯୪)





Digitized by srujan ka@gmail.com

## ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ପ୍ରକାଶିତ ପୁସ୍ତକାବଳୀ

### ଉପନ୍ୟାସ :

ହାତକଡ଼ି ◆ ପିଶାଚ ◆ ମାୟାପୁରୀ ◆ ଚକ୍ରବ୍ୟୂହ ◆ ହରଣଚାଳ ◆ ପ୍ରଥମ ପ୍ରେମ ◆ ଚତୁର ଚତୁରୀର ଖେଳ

### ମୌଳିକ କାହାଣୀ ସଂଚୟନ :

ନୈବେଦ୍ୟ ◆ ଓଢ଼ଣା ଖୋଲ ◆ ଉଡ଼ନ୍ତା ବୋମା ◆ ମଳୟ ବହିଲାଣି ◆ ଗୋଟିଏ ସନ୍ଧ୍ୟା ◆ ଅନ୍ଧ ଦେଶକୁ ଗଲି ◆ ଦେହ ନିଲାମ ହେଉଛି ◆ ମାଟି ଘଟ ମନ

### ଜୀବନୀ :

ଯେତେ ମତ ସେତେ ପଥ ◆ ଏକଲା ଚାଲ ◆ ଥକା ମନ ◆ କଲ୍ୟାଣମୟୀ ଜନନୀ ◆ ଯୀଶୁ ◆ ଜଗଦ୍ଗୁରୁ ◆ ଦେବ ଦାନବ ମାନବ ◆ ସତ୍‌ସଙ୍ଗ ◆ ଗାନ୍ଧୀବାଦ୍ ◆ ପାଖ ନଇ ଦୂର ପାହାଡ଼ ◆ ଯୁଗପୁରୁଷ ସଫଳ ସପନ ◆ କୃପା କର ଦୀନ ଜନେ

### ଅନୁବାଦ :

ଅଛବ ◆ ସଙ୍ଗମ ◆ ବତିଘର ◆ ବନଚାରୀ ◆ ଗୋରା ◆ ଆତ୍ମପ୍ରକାଶ ◆ ବାରବନିତା ◆ ନଗ୍ନ ସତ୍ୟ ◆ ହାଉଣ୍ଡ ଅଫ୍ ବାସ୍କାରଭିଲ୍‌ସ ◆ ଅଙ୍ଗୀକାର ◆ ରମଣୀ ମନ ◆ ମାଆ ଓ ପୁଅ ◆ ବାତୋୟାଲା ◆ ଦୁଇଟି ନାରୀ ◆ ଆନନ୍ଦ କୁମାର ◆ ଖୁନ୍ ପରେ ଖୁନ୍ ◆ ଆନା କାରେନିନା ◆ ଅପରିଚିତାର ପତ୍ର ◆ ବିଦାୟ, ଗୁରୁଦେବ ◆ ଦେଶ ବିଦେଶର କାହାଣୀ ◆ ଦୁଇଟି ନଗରୀର କାହାଣୀ ◆ ବିବେକାନନ୍ଦ : ଜୀବନ ଓ ବାଣୀ ◆ ନୋବେଲ ଲରିୟେଟଙ୍କ ସରସ ଗପ ◆ ଅପଚ୍ଛାୟା ◆ ଲଢ଼େଇ ସରିଲା ଯେବେ

Digitized by srujan ka@gmail.com

◆ ଜେମ୍ସ ବଣ୍ଡ ଓ ନୀଳ ନୟନା ◆ ଶିକାର କାହାଣୀ ◆ କଳା ପିଲା ◆ ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ଧର୍ମ ◆ ଦିନଟିଏ ◆ ଜଳ ତରଙ୍ଗ ◆ ଶାଗୁଣା ◆ ଘଡ଼ଘଡ଼ି ◆ ସୁଇସାଇଡ୍ କ୍ଲବ୍ ◆ ମୃଷା ଜନ୍ତା ◆ ପ୍ରଶାନ୍ତ ରେବେକା ◆ ଏମିଲର ଗୋଇନ୍ଦା କାହାଣୀ ◆ ପଶ୍ଚିମ ସୀମାନ୍ତ ଶାନ୍ତ ◆ ଜୀବନର ହିନ୍ଦୁ ମତ

## ପୃଥିବୀର ଶ୍ରେଷ୍ଠ ଗଳ୍ପମାଳା :

ଆମେରିକା ◆ ଇଂଲଣ୍ଡ ◆ ସୋଭିୟେଟ ◆ ଫ୍ରାନ୍ସ ◆ ଜର୍ମାନୀ ◆ ଇଟାଲୀ ◆ ୟୁରୋପ ◆ ଏସିଆ ◆ ଅଷ୍ଟ୍ରେଲିଆ ◆ ଲାଟିନ୍ ଆମେରିକା ◆ ଚୀନ ◆ ଭାରତବର୍ଷ ◆ ବସୁନ୍ଧରାର ଉପବନ ◆ ହିମାଳୟରୁ କୁମାରୀକା

## ପୃଥିବୀର ଶ୍ରେଷ୍ଠ ଉପନ୍ୟାସମାଳା :

କାଦମ୍ବରୀ ◆ ଆନନ୍ଦ ମଠ ◆ ଜନନୀ ◆ ଅଦୃଶ୍ୟ ମାନବ ◆ ବସୁଧା ◆ ଯୁଦ୍ଧ ଓ ଶାନ୍ତି ◆ ସୂର୍ଯ୍ୟାସ୍ତ ◆ ଲଳିତା ◆ ସିଦ୍ଧାର୍ଥ ◆ ଦୁରନ୍ତ ଅଭିଳାଷ ◆ ନରମେଧ ◆ ଅନୁରାଗିଣୀ ◆ ଉପନ୍ୟାସ ଅମରାବତୀ



Digitized by srujan ka@gmail.com

# ବହିଘର

ସିନେମା ବଜାର, ବାଲେଶ୍ୱର

## ପ୍ରକାଶିତ ପୁସ୍ତକାବଳୀ

*ଉପନ୍ୟାସ :*

ଯେଉଁଠି ଆରମ୍ଭ ସେଇଠି ଶେଷ — ଟ ୫୦.୦୦
ସଂଯୁକ୍ତା ରାଉତ

*ଅନୁବାଦ ଉପନ୍ୟାସ :*

ସୂର୍ଯ୍ୟ ପ୍ରାଙ୍ଗଣ — ଟ ୬୫.୦୦
ମୂଳ ବଙ୍ଗଳା : ବିଶ୍ୱନାଥ ରାୟ
ଭାଷାନ୍ତର : ଶ୍ରୀବାସ କର

*ଗଳ୍ପ ସଂକଳନ :*

ସ୍ୱପ୍ନ ଦୌଡ଼ — ଟ ୩୫.୦୦
ଉଦୟ ନାରାୟଣ ଦାସ

ଅଲଗା ପୃଥିବୀ — ଟ ୩୫.୦୦
ମାଢାକାର

ଜହ୍ନରାତିର ନଟୀ — ଟ ୫୫.୦୦
ପୁଷ୍ପାଞ୍ଜଳି ନାୟକ

*କବିତା :*

ଜଣେ ପଦାତିକର କବିତା — ଟ ୩୦.୦୦
ବ୍ରହ୍ମାନନ୍ଦ ଦାସ

Digitized by srujan ka@gmail.com

*ଶିଶୁ କିଶୋର ସାହିତ୍ୟ :*

**କଳାପିଲା** ଟ ୧୦.୦୦
ମୂଳରଚନା : ଗଟାଡ଼ ଖାଇଟ୍
ଅନୁବାଦ : ଲକ୍ଷ୍ମୀନାରାୟଣ ମହାନ୍ତି

**ଶିକାର କାହାଣୀ** ଟ ୧୨.୦୦
ଲକ୍ଷ୍ମୀନାରାୟଣ ମହାନ୍ତି

**ଯେତେ ମତ ସେତେ ପଥ** ଟ ୨୦.୦୦
ଲକ୍ଷ୍ମୀନାରାୟଣ ମହାନ୍ତି

**ଅଜବ ହାତୀ** ଟ ୧୫.୦୦
ମୂଳ ଋଷୀୟ : ଆଲେକ୍‌ଜାଣ୍ଡାର ବେଲିୟାୟେଭ୍
ଅନୁବାଦ : ଲକ୍ଷ୍ମୀନାରାୟଣ ମହାନ୍ତି

*ଅନ୍ୟାନ୍ୟ ପୁସ୍ତକ :*

**ଓଡ଼ିଶାର ଆଦିମ ଗୁମ୍ଫା ଚିତ୍ରକଳା** ଟ ୧୦୦.୦୦
କାର୍ତ୍ତିକ ଚନ୍ଦ୍ର ଜେନା

**ଉପନ୍ୟାସ ମାଧୁକରୀ** ଟ ୧୦୦.୦୦
(ନୋବେଲ ବିଜେତାମାନଙ୍କର ନୋବେଲ ପୁରସ୍କୃତ
ଉପନ୍ୟାସର ସଂକ୍ଷିପ୍ତ କଥାସାର)
ଅନୁବାଦ : ଲକ୍ଷ୍ମୀନାରାୟଣ ମହାନ୍ତି

**ପ୍ରାଚ୍ୟ ଓ ପାଶ୍ଚାତ୍ୟରେ ଧର୍ମ** ଟ ୫୦.୦୦
ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ୍
ଅନୁବାଦ : ଲକ୍ଷ୍ମୀନାରାୟଣ ମହାନ୍ତି



Digitized by srujan ka@gmail.com



# ଲକ୍ଷ୍ମୀ ନାରାୟଣ ମହାନ୍ତି

ସଂଯତ ସୁନିର୍ବାଚିତ ଶବ୍ଦ ଯୋଜନାପୂର୍ଣ୍ଣ ଭାବବ୍ୟଞ୍ଜକ ଅତି କ୍ଷୁଦ୍ର କାହାଣୀର ପ୍ରବର୍ତ୍ତନରେ ଲକ୍ଷ୍ମୀନାରାୟଣଙ୍କ ଖ୍ୟାତି ସୁବିଦିତ । ତାଙ୍କର ଚିର ନୂତନ ଶୈଳୀ, ଭାଷା ଓ ଭାବ ନିଃସନ୍ଦେହରେ ଅନୁକରଣୀୟ । ତହିଁର ପରିଚୟ ବହନ କରେ ଜନପ୍ରିୟ କାହାଣୀ ସଞ୍ଚୟନ 'ମଳୟ ବହିଲାଣି', 'ଉଡନ୍ତା ବୋମା', 'ଓଢଣା ଖୋଲ' 'ଦେହ ନିଲାମ ହେଉଛି' 'ଅନ୍ଧ ଦେଶକୁ ଚାଲି', 'ମାଟି କଳସୀ' ଇତ୍ୟାଦି । ବୈଚିତ୍ର୍ୟପୂର୍ଣ୍ଣ ମାନବ ଚରିତ୍ର ଚିତ୍ରଣରେ ତାଙ୍କର ଲେଖନୀ ନିରନ୍ତର ଉନ୍ମୁଖ । ଏକାଧାରରେ କୃତୀ ଔପନ୍ୟାସିକ ଓ ଚରିତ୍ର ଜୀବନୀକାର ମଧ୍ୟ । ଯଶସ୍ୱୀ ଅନୁବାଦକ ରୂପେ ପାଠକମାନଙ୍କ ଦ୍ୱାରା ସ୍ୱୀକୃତ, ପ୍ରଶଂସିତ ଏବଂ 'ପ୍ରଜାତନ୍ତ୍ର ପ୍ରଚାର ସମିତି', କେନ୍ଦ୍ର ଓ ରାଜ୍ୟ ସାହିତ୍ୟ ଅକାଦମୀ ସମେତ ବହୁ ସାରସ୍ୱତ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ । ପୋଲିସ ବିଭାଗରୁ ଅବସର ନେଇ ସାହିତ୍ୟ ସାଧନାରେ ଅବିରତ ନିମଗ୍ନ । ଜାତୀୟ ସାହିତ୍ୟରେ ଯୁଗାନ୍ତର ଆନୟନ ତାଙ୍କର ଚରମ ଲକ୍ଷ୍ୟ । ଲେଖକମାନଙ୍କୁ ସଂଘବଦ୍ଧ ଓ ଆତ୍ମନିର୍ଭରଶୀଳ କରଣାର୍ଥେ 'ଓଡ଼ିଆ ଲେଖକ ସହଯୋଗ ସମିତି' ଓ ମାସିକ ପତ୍ରିକା 'ଉଦୟ'ର ପ୍ରାଣପ୍ରତିଷ୍ଠାତା । ଆନ୍ତର୍ଜାତିକ ସାହିତ୍ୟିକ ସଂଘର ଆଜୀବନ ସକ୍ରିୟ ସଦସ୍ୟ । ନାନା ସାଂସ୍କୃତିକ ଅନୁଷ୍ଠାନ ସହିତ ବିଜଡ଼ିତ । ଶ୍ୟାମତନୁ, କ୍ଷୁଦ୍ରକାୟ, ସ୍ୱାସ୍ଥ୍ୟବାନ, ଅଧ୍ୟବସାୟୀ, ବନ୍ଧୁବତ୍ସଳ । କଥା ଅପେକ୍ଷା କାର୍ଯ୍ୟକୁ ଅଧିକ ପସନ୍ଦ କରନ୍ତି । ପରକୁ ଆପଣାର କରିବା ଏବଂ ନିଜର ଅପରକୁ ଦେବାରେ ହିଁ ତାଙ୍କର ନିରଳସ ଜୀବନ ଓ ସ୍ୱଚ୍ଛସଳିଳା ସାଧନା ସମ୍ପୂର୍ଣ୍ଣ ଆହ୍ଲାଦିତ । ଅଦ୍ଭୁତ ସଂସାରୀ ଓ ବ୍ୟସ୍ତବିକାର ଦାୟିତ୍ୱକୁ ସହାସ୍ୟ ଚିତ୍ତରେ ସ୍ୱାଗତ କରି ଅବିରାମ କଣ୍ଟକିତ ପଥରେ ଚାଲିଛନ୍ତି । ଅଦ୍ୟାବଧି ତାଙ୍କର ସତୁରି ଖଣ୍ଡରୁ ଅଧିକ ପୁସ୍ତକ ପ୍ରକାଶିତ ।

---

ଆଦି ନିବାସ : 'ତପୋବନ',
ଜଗନ୍ନାଥପୁର, ଭଦ୍ରକ - ୭୫୬ ୧୦୦

ଆବିର୍ଭାବ : ୧୯୧୯





**ବହିଘର**

ସିନେମା ବଜାର, ବାଲେଶ୍ୱର

ISBN 81-87346-03-8


Digitized by srujan ka@gmail.com